# ସାରସୁଧା ଗୀତା



ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶାବଜାର, କଟକ-୨

ଓଁ ଶ୍ରୀ କୃଷ୍ଣାର୍ପଣମସ୍ତୁ

# ସାରସୁଧା ଗୀତା

ଶ୍ରୀ ସିଦ୍ଧଗିରି ମହାପୁରୁଷ ଶ୍ରୀ ହାଡ଼ିବନ୍ଧୁ ଦାସଙ୍କ ଶିଷ୍ୟପୁତ୍ର

ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ ଶର୍ମାଙ୍କ

ରଚିତ

ନୂତନ ମୁଦ୍ରଣ—୧୯୮୧

ଚହାହଂ ନଷ୍ଟିତଂ ପୃଥ୍ୱୀ ନିବାସାମି ସଦୈବହି
ଗୀତାଶ୍ରୟେଽହଂ ତିଷ୍ଠାମି ଗୀତାମେ ଚୋତ୍ତମଂ ଗୃହଂ
ଗୀତାଜ୍ଞାନ ମୁପଶ୍ରିତ୍ୟ ତ୍ରିନ୍ ଲୋକାନ୍ ପାଳୟାମ୍ୟହଂ
ନ ଶୃଣୋତି ନ ପଠନ୍ତି ଗୀତାମମୃତଂ ରୂପିଣୀଂ
ହସ୍ତାତ୍ୟକ୍ତାମୃତଂ ପ୍ରାପ୍ତଂ ସନରେ ବିଷମଶ୍ନୁତେ
ଯେ ଯଥମାଂ ପ୍ରପଦ୍ୟନ୍ତେତାଂସ୍ତଥୈବ ଭଜାମ୍ୟହଂ
ମମବର୍ତ୍ମାନୁ ବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ
ଧର୍ମମର୍ଥଂ ଚକାମଂ ଚ ମୋକ୍ଷଂ ଶ୍ଚପିଶ୍ରିତଃ ସଦା
ଶ୍ରୋତବ୍ୟା ପାମସ୍ୱା ଚ ଗୀତା କୃଷ୍ଣ ମୁଖୋଦ୍‌ଗତା ॥

ପ୍ରକାଶକ : **ଧର୍ମଗ୍ରନ୍ଥ ଷ୍ଟୋର**

କଟକ-୨

ମୂଲ୍ୟ—ଆଠଟଙ୍କା ମାତ୍ର

# ଭୂମିକା

ଏତଦ୍ଦ୍ୱାରା ସ୍ୱାର୍ଥି ପରମାର୍ଥି ଭକ୍ତଙ୍କୁ ଜଣାଉଅଛୁ ଯେ—ଏହି "ସାରସୁଧା ଗୀତା" ନାମକ ପୁସ୍ତକ ମୋର ଗୁରୁଦେବ ଶ୍ରୀ ଅଚ୍ୟୁତାନନ୍ଦ ଦାସଙ୍କ ପ୍ରସାଦରୁ ଏବଂ ତାହାଙ୍କ ଆଦେଶମତେ ଅନେକାନେକ ଯୋଗ, ସାଂଖ୍ୟ, ଉପନିଷଦ୍, ଗୀତା ଓ ଭାଗବତାଦି ଗ୍ରନ୍ଥମାନଙ୍କରୁ ସାର ସଂଗ୍ରହ କରି, ମକ୍ଷିକା ଯେପରି ନାନାଦି ପୁଷ୍ପ-ମାନଙ୍କରୁ ମକରନ୍ଦ ସଂଗ୍ରହକରି ସଂସାର ହିତ ଅର୍ଥେ ମଧୁ ସଞ୍ଚୟ କରେ, ତଦ୍‌ବତ୍ ମୁଁ ବହୁକାଳ ମନ, ଜ୍ଞାନ, ବୁଦ୍ଧି, ବିବେଚନାଦି ଯୋଗଦେଇ ବହୁ ପରିଶ୍ରମ ପୂର୍ବକ ଏହି ଅମୂଲ୍ୟ ପୁସ୍ତକ ଖଣ୍ଡିକ ରଚନା କରିଅଛୁ । ଏଥିରେ ଜ୍ଞାନମାର୍ଗ, ଭକ୍ତିମାର୍ଗ, ଯୋଗମାର୍ଗ, ଶରୀରଭେଦ, ଷଟ୍‌ଚକ୍ର ନିରୂପଣ, ସପ୍ତାଙ୍ଗ, ଅଷ୍ଟାଙ୍ଗ ଯୋଗ, ସ୍ଥୂଳ, ସୂକ୍ଷ୍ମ, କାରଣ, ସପ୍ତପଞ୍ଚାତ୍ମିକ ମହାଶୂନ୍ୟ ବଖାଣ, ନିରାକାର ବଖାଣ, ହୃଷ୍ୟାଦର୍ଶନ, ଅବାଙ୍ଗ ଦର୍ଶନ, ବିରାଟ ଦର୍ଶନ, ଧ୍ୱନିବାରଣ, ଅଣାକ୍ଷର ଏକାକ୍ଷର, ଓଁକାର ଏକାକ୍ଷର, ନିତ୍ୟ ବିହାସ ବଖାଣ, ସାଧନା ବଖାଣ, ଭାଗବତ ନ୍ୟାସ, ଗାୟତ୍ରୀ ନ୍ୟାସ ବଖାଣ, ବ୍ୟାହୃତି ଚୂଡ଼ା ସାବିତ୍ରୀ ଷଟ୍‌କର୍ମ, ସିଦ୍ଧି ବଖାଣ, ଜୀବ ପରମ ରହସ୍ୟ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଗତାଗତ ବିଚାର, ବୀଜ ମନ୍ତ୍ର ସ୍ଥିତି, ଅନେକାନେକ ଚିହ୍ନ ଅଙ୍କନ, ବ୍ରହ୍ମ ଓ ଶବ୍ଦ ନିରୂପଣ, ବିରାଟ ରୂପ ଦର୍ଶନ ଏବଂ କାଳଜ୍ଞାନାଦି ଅନେକାନେକ ଆହ୍ଲାଦଜନକ ବିଷୟମାନ ଓ କଳିଯୁଗ କାହାଣୀ ବର୍ଣ୍ଣିତ ହୋଇ ଆବାଳ ବୃଦ୍ଧବନିତାଦି ସମସ୍ତଙ୍କ ହିତ-ସାଧନାର୍ଥେ ଅତି ସରଳ ଓ ସୁମଧୁର ପଦ୍ୟାକାରରେ ରଚିତ ହୋଇ ଦ୍ୱାଦଶ ଅଧ୍ୟାୟରେ ସମାପ୍ତ ହୋଇଅଛି—କିନ୍ତୁ ରଚୟିତା ଶାସ୍ତ୍ରଜ୍ଞ ଓ ବିଦ୍ୟା ବିନୋଦରେ ଅନଭିଜ୍ଞ ହେଲେ ସୁଦ୍ଧା ଶ୍ରୀ ଗୁରୁଦେବଙ୍କ ପ୍ରସାଦ ଓ କରୁଣା କଲ୍ୟାଣରୁ ଏବଂ ନିଜ ଶକ୍ତିରୁ ଉତ୍ସାହିତ ହୋଇ

ସ୍ୱର୍ଗ ପାରିଜାତ କୁସୁମକୁ ବାମନ ହୋଇ ହସ୍ତ ବଢ଼ାଇବା ନ୍ୟାୟ ଏହି ପୁସ୍ତକ ଖଣ୍ଡିକ ରଚନା କରି ପ୍ରକାଶିତ କରିଅଛୁ ।

ଅତଏବ ପାଠକ ପାଠିକାଗଣ ସଦୟ ହୋଇ ହଂସ ଯେପରି ନୀର ମିଶ୍ରିତ କ୍ଷୀରରେ ନୀର ଅଂଶ ତ୍ୟାଗକରି କ୍ଷୀରପାନ କରି ଆଶା ଓ ଉଦର ପୂର୍ଣ୍ଣ କରେ, ତଦ୍‌ବତ୍ ଏହି ପୁସ୍ତକରେ ଦୋଷଥିଲେ ସୁଦ୍ଧା ଦୋଷ ଭାଗ ତ୍ୟାଗକରି ସାର ଗ୍ରହଣ କରି ବାଞ୍ଛିତଫଳ ଲାଭ କରିବେ ବୋଲି ବିନୀତ ଅନୁରୋଧ କରୁଅଛୁ ।

ଷଣ୍ଢ ମାହାନ୍ତି ସାହି
ବ୍ରହ୍ମପୁର (ଗଞ୍ଜାମ)

ଭକ୍ତ ଦାସାନୁଦାସ
ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ ଶର୍ମା

## ନୂତନ ମୁଦ୍ରଣ

ଅବପାଣ୍ଡୁଲିପିଟି ଗଞ୍ଜରକେଲରୁ ଯେଉଁ ଭଦ୍ରବ୍ୟକ୍ତି ଦେଇଥିଲେ, ତାଙ୍କର ନାମ ଓ ଠିକଣା ସଠିକ ପାଇପାରିଲୁନାହିଁ । ଏ ପୁସ୍ତକଟି ସନ ୧୯୩୯ ମସିହାରେ ପ୍ରକାଶିତ ହୋଇ ଲୁପ୍ତହୋଇଯାଇଥିଲା । ଏହା-ଦ୍ୱାରା ସାଧାରଣ ଲୋକେ ବହୁ ଜ୍ଞାନ ଅର୍ଜନ କରି ପାରିବେ ବିଚାର କରି ଏ ପାଣ୍ଡୁଲିପି ଲୁପ୍ତହେବା ସ୍ଥଳେ ନୂତନ ଭାବେ ପ୍ରକାଶ କଲୁ । ଦୋଷଥିଲେ ନିଜ ଗୁଣେ କ୍ଷମା ଦେବେ । ଇତି ।

ପ୍ରକାଶକ

ଉକ୍ତ ପୁସ୍ତକ ଶ୍ରୀ ନନ୍ଦକିଶୋର ଦାସ ପ୍ରକାଶ କରିଥିଲେ; ମାତ୍ର ଏହି ପୁସ୍ତକର ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା ବଢ଼ିବା ପାଇଁ ଧର୍ମଗ୍ରନ୍ଥ ଷ୍ଟୋରକୁ ପ୍ରକାଶ କରିବା ପାଇଁ ଅନୁମତି ଦେଲେ ।

ପ୍ରକାଶକ

ଓଁ

# ସାରସୁଧା ଗୀତା

## ଗଣାଧିପ ବନ୍ଦନା

ଶ୍ଲୋକଃ

ବନ୍ଦେ ଦେବ ଗଜାନନଂ ତ୍ରିନୟନଂ ଲମ୍ବୋଦରଂ ସୁନ୍ଦରଂ ।
ଖର୍ବଂ ସ୍ଥୂଳ ତନୁ ଗଜେଜନ୍ଦ୍ର ବଦନଂ ବ୍ୟାଲୋଲ ଗଣ୍ଡସ୍ଥଳଂ ॥
ଦନ୍ତାଘାତ ବିଦାରିତାରୁଧିରୈଃ ସିନ୍ଦୁରେ ଶୋଭାକରଂ ।
ବନ୍ଦେ ଶୈଳସୁତାସୁତଂ ଗଣପତିଂ ମାଂ ପାତୁ ବିଘ୍ନେଶ୍ୱରଃ ॥

## ଗୁରୁଦେବ ବନ୍ଦନା

ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦ୍ଦେବ ମହେଶ୍ୱର
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।
ଜଗତ୍ ଜନ ଚେତନାର୍ଥେ ପ୍ରଘଟ ରହସ୍ୟ ସୃଷ୍ଟି
ଖର୍ବ ହିତକାଙ୍କ୍ଷ କର୍ତ୍ତା ଜ୍ଞାନଦାତା ଅବଧୂତ୍ ।
ଅଚ୍ୟୁତ ଗୋଲକନାଥଂ ସାକ୍ଷାତ୍ ବିଷ୍ଣୁ ସ୍ୱରୂପକଂ
କଳୌହର୍ତ୍ତାଚ କର୍ତ୍ତାଚ ସିଦ୍ଧି ଶୈଳ ପ୍ରକାଶିତଂ ।
ଦାତ୍ତ ଦାସୋ ନାମଂ ଖ୍ୟାତା ବ୍ରହ୍ମ କାଷ୍ଠୁ ସମନ୍ୱିତଂ
ଜ୍ଞାନାନନ୍ଦ ମୟଂ ଯସ୍ୟ ସିଦ୍ଧି ବୁଦ୍ଧି ପ୍ରଦାୟକଂ ।

ଗୀତାସ୍ୟ ସାରସୁଧାଂ ଚ ଯେନ ପଠନ୍ତ ମାନବଃ
ତସ୍ୟ ବାଂଛା ଫଳଂ ପ୍ରାପ୍ତ ବଦନ୍ତ ଶ୍ୟାମସୁନ୍ଦରଂ ।
ଜାନାମ ଧର୍ମ ନ ଚ ମେ ପ୍ରବୃତ୍ତି ଜାନାମ ଧର୍ମ ନ ଚ ମେ ନିବୃତ୍ତି
ଇତ୍ୟା ହୃଷିକେଶ ହୃଦେସ୍ଥିତେନ ଯଥାନିଯୁକ୍ତୋଽସ୍ମି ତଥା କରୋମି ।

ଓଁ ତତ୍‌ସତ୍—ଦନଉବାଚ

ନମସ୍ତେ ଶ୍ରୀ ଗୁରୁଦେବ ଠୂଳ ଶୂନ୍ୟବାସୀ । ନମସ୍ତେ ଅରୂପବ୍ରହ୍ମ ରୂପରେ ପ୍ରକାଶି ॥ ନମସ୍ତେ ଅବ୍ୟକ୍ତ ବ୍ରହ୍ମଅକଳନ୍ତ ଲୀଳା । ବ୍ୟକତ ହୋଇ ଭୂଖଣ୍ଡେ କରୁଅଛ ଖେଳା ॥ ଭକତ ନିସ୍ତାର ତୋର ଗୁରୁ ପୂର୍ଣ୍ଣବ୍ରହ୍ମ । ହାଡ଼ିଦାସ ନାମରେ ହୋଇଛ ଜନମ ॥ ଆଜ୍ଞା ଚକ୍ରେ ସଦା ଥାଇ ଜ୍ଞାନ ଦେଉଅଛ । ଚୈତନ୍ୟ ରୂପରେ ରହି ବିହାର କରୁଛ ॥ ନମସ୍ତେଅଚ୍ୟୁତଦାସ ଗୁରୁଦେବ ବ୍ରହ୍ମା । ନମସ୍ତେ ଶ୍ରୀଗୁରୁ-ଦେବ ବିଷ୍ଣୁ ଶିବ ବ୍ରହ୍ମା ।୫। ନମସ୍ତେ ଅଚ୍ୟୁତାନନ୍ଦ ଖିଳଜନ କର୍ତ୍ତା । ନମସ୍ତେ ଅବ୍ୟକ୍ତ ରୂପ ଦୁଷ୍ଟଜନ ହର୍ତ୍ତା ॥ ନମସ୍ତେ ଶ୍ରୀଦେବ ଦେବ ସର୍ବ ଅନ୍ତର୍ଯାମୀ । ଭଗତ ତାରଣ ଅର୍ଥେ ଜନମ ଅବନୀ ॥ ନମସ୍ତେ ଶ୍ରୀଗୁରୁ ଦେବ ବ୍ରହ୍ମା ବିଷ୍ଣୁ ଶିବ । ବିହାର କରୁଛ ଶୂନ୍ୟେ ନାହିଁ ଭବାଭବ ॥ ଭୂଲ ଶ୍ୟାମସୁନ୍ଦରକୁ କରନ୍ତୁ କରୁଣା । ସାରସୁଧା ଗୀତା ତୁମ୍ଭ ହେଉଛି ସ୍ମରଣା ॥ ଅନୁଜ୍ଞା ହେଉଛି ଯାହା ହୃଦଗତେ ଥାଇ । ଶ୍ରୀପଦକୁ ଧ୍ୟାଇ ତାହା ସରସେ ଲେଖଇ ।୧୦। ନମଇଁ ଗୁରୁ ଗୋବିନ୍ଦ ଭକ୍ତ ଦୟାନିଧି । ମାର୍ଜ୍ଜନା କରନ୍ତୁ ଦୋଷ ନ ଜାଣଇ ବିଧି ॥ ନମୋଃ ନମୋଃ ଗୁରୁଦେବ କୃପା ପାରାବାର । ଭକତ ନିମନ୍ତେ ନାମ କରିଛ ପ୍ରଚ୍ଚର ॥ ଏହି ଘୋର କଳିଯୁଗେ ପ୍ରାଣୀଙ୍କର ହିତେ । ଅହିଂସା ପରମ ଧର୍ମ ପ୍ରଚ୍ଚର ଜଗତେ ॥ ସର୍ବ ଧର୍ମଠାରୁ ସାର ଅହିଂସା ଧରମ । ନିର୍ଗୁଣ ଭଜନ ହେତୁ ସତ୍ୟ ନିରୁପମ ॥ ପରାପର ନାହିଁ ତାର ସମଦର୍ଶୀ ସେହି । ଶୂନ୍ୟରେ ରହିଣ ଖେଳ ଖେଳାଉଛ ମହି ॥ ସ୍ଥୂଳରେ ପ୍ରକାଶ ହୋଇ

ଲୀଳାରେ ବିନୋଦ । ଊର୍ଣ୍ଣନାଭ ଯେସନେ ଖେଳଇ ଜାଲ ମଧ୍ୟ ॥ଅନ୍ଧ-
ଧୁରୁ ଛିଦ୍ର ହୋଇ କଳ୍ପନା ହୋଇଲା । ଅର୍ଦ୍ଧମାତ୍ରା ଶକ୍ତିହୋଇଓଁକାର
ଜନ୍ମିଲା ॥ ଅ କାର ଉ କାର ମ କାର ଓଁ କାର ହୋଇ । ବୈକୁଣ୍ଠ
ମଧ୍ୟରେ ବ୍ରହ୍ମ ରୂପେ ବିରାଜଇ ॥ ବୈକୁଣ୍ଠ ମଧ୍ୟରେ ବିଜେ କରିଥାଅ
ବାସ । ବଉଦ୍ଧ ରୂପକୁ ତେଜ କଳକ ପ୍ରକାଶ ॥ ଘୋର କଳିଯୁଗ
ଦେଖି ହେଉଛି ଚାଟକା । ଉଦ୍ଧର ଧରନ୍ତୁ ପ୍ରଭୁ ତୁଟନ୍ତୁ ମୋରଶଙ୍କା ।୨୦
ପ୍ରଚ୍ଛର କରିବାକୁ ସେ ସମୟ ନିକଟ । ଝାଡ଼େ ବାଡ଼େ ଲୁଚିଛନ୍ତି
ଦେବାଦେବୀ ଥାଟ ॥ ଗିରି ଖୋଟେ ଲୁଚିଛନ୍ତି ତବ ଭକ୍ତଗଣ । ଦୁଷ୍ଟ
ନିବାରଣ ସନ୍ଥ କର ହେ ପାଳନ ॥ ନବ କୋଟି କାତ୍ୟାୟନୀ
କ୍ଷୁଧାରେ ଆତୁର । ଉଦର ପୂରାଇ ତାଙ୍କୁ ଦିଅ ହେ ରୁଧିର ॥ ଖଗ
କାକର ବର୍ଷା ସମ୍ଭାଳ କଷ୍ଟ ସହି । ଝରଣା ପାଣି ଖାଇ ସତ୍ୟକୁ
ଛନ୍ତି ରହି ॥ ନୋହିବ ଯେବେ ଦୟା ଜଗତ ଯିବ ନାଶ । ତତପର
ହୁଏ ନାଥ କମଳା ବିଳାସ ।୨୫। ସତର ଦିନ ଓଳିଏ ଭୋଗ
ହୋଇଥିଲା । ଆଉ ଏକ ଓଳିଏକ ବାକି ରହିଗଲା ॥ ସେହି ଓଳିକି
ଖେଳ ଯେ ଦେଖିବେ ଜଗତେ । ଆନନ୍ଦେ ଖେଳନ୍ତୁ ପ୍ରଭୁ ଭକତଙ୍କ
ସାଥେ ॥ ଏହି ବାଂଛା ପୂର୍ଣ୍ଣ ହେବ ସିଦ୍ଧ ଗିରି ସ୍ଥାନ । ଅଚ୍ୟୁତାନନ୍ଦ
କହନ୍ତି ନୋହିବ ଯେ ଆନ ॥ ଏହି କଥା ଶୁଣି ପ୍ରଭୁ ନିଦ୍ରା ଆକର୍ଷିଲା ।
ଛନକା ପଶିଲା ହୃଦେ ସ୍ଥିର ନ ହୋଇଲା ॥ ଘୋଟିଲା ଅନ୍ଧାର ସବୁ
ପଥ ନ ଦିଶିଲା । ହାରିଦ୍ର କୃଷ୍ଣ ଲୋହିତ ପ୍ରାୟେ ପ୍ରକାଶିଲା । ନିଦ୍ରା
ଯାଇଥିଲା ଘଟ ସ୍ୱପନେ କହିଲା । ଚଆଇଁ ଦେଖିବା ମାତ୍ରେ ଅନ୍ତର
ହୋଇଲା । ଚତୁର୍ଭୁଜ ଚତୁବର୍ଣ୍ଣ ପିଙ୍ଗଳ ଦିଶଇ । ଖଣ୍ଡା ଖର୍ପର
ହସ୍ତରେ ଶୋଭା ପ୍ରକାଶଇ ॥ ଫରହର ହୋଇ ଏକେକେଶ ବିରାଜୁଛି।
ନିଦ୍ରା ଘଟେ ଯାଉଥିଲା ସେହି ରୂପ ବାଛି ॥ ନିଦ୍ରା ଭାଙ୍ଗ ଯିବାରୁ ସେ
ଏବେକ ହଜିଲା । ଶ୍ରୀଗୁରୁଙ୍କ ନାମ ସ୍ମରି ଚଆଇଁ ଉଠିଲା ॥ ଚମ୍ପିଲା

ଶ୍ରୀଗୁରୁ ରୂପ ହୃଦରେ ପୂରଇ । ସିଦ୍ଧ ଶୈଳ ବଜସ୍ୱେ ଅଚ୍ୟୁତାନନ୍ଦ ସାଇଁ ॥ ପୁନରପି ନଦ୍ରା ଆକର୍ଷଣ କଲ ଯତ୍ନ । ତପନ ଉଦୟୁ ହେଲ ଉଠ ବୋଲ ତତ୍ତ୍ୱ ॥ କମ୍ପାଇ ବ୍ୟାକୁଳ ପ୍ରତା ଦେଉଛୁ ବୋଲଣ । ତୋର ହୃଦେ ବ୍ୟାପିଅଛୁ ଭୁବ୍ହ ଜ୍ଞାନେ ଚିହ୍ନ ॥ ଭେଦାଇ କହୁଛନ୍ତି ଶୃଣିକ ସ୍ଥିର କର ଲେଖିବାକୁ ସାରସୁଧା ଜ୍ଞାନ ଯୋଗ ସାର ॥ ଶ୍ରୀ ଗୁରୁଙ୍କ ଶ୍ରୀମୁଖରୁ ଏମନ୍ତ ଶୁଭିଲ । ଚମକ ଉଠିଲ ପୁତ୍ର ମାତାକୁ ଚିନ୍ତିଲ ॥ କମ୍ପାଇ ନର୍ଦ୍ଦଯୁ ମାଗୋ ତୋହର ତନୟୁ । ପୁତ୍ରକୁ ଅନାଥ କଲେ ହୋଇବ ଅଥୟୁ ।୪୦। ତୋହର କରୁଣା ମାଗୋ ନ ହୋଇବ ଯେବେ । ସଂସାରର ବନ୍ଧନରେ ପଡ଼ିବେ ସର୍ବେ ॥ ଜଗତ ଜନନୀ ମାଗୋ ହୁଅ ସୁପ୍ରସନ୍ନ । ଭୂଲ ଶ୍ୟାମ ତବ ପାଦେ ପଶଇ ଶରଣ ॥ ରଖ ହେ ଜଗତ ନାଥ ଦୁଃଖୀର ସଙ୍ଗାତି । ଦୁଃଖୀର ଆରତ ଘେନ ଜଗତ ଅଧିପ ॥ ବଦନ୍ତୁ ଗୋଲକ ନାଥ ସାରସୁଧା ବାଣୀ । ସାରସୁଧା ମର୍ହିମାଟି କର୍ଣ୍ଣେ ନାହିଁ ଶୁଣି ॥ ଗୁପତ ନକର ପ୍ରଭୁ ଫିଟାଇ କହିବ । ଜଗତ ତମ ବିନାଶି ଜ୍ଞାନାଞ୍ଜନ ଦେବ । ୪୫ । ସତ୍ୟ ସନାତନ ଧର୍ମ ହୋଇବ ଉଦୟୁ । ଅହଂଗୁଣ ଦୂରକରି ସୁଜ୍ଞାନ କରାଅ ॥ ସେ ଅଚ୍ଚ ରହସ୍ୟ ତବ କହିବ ବୁଝାଇ । ଭୂଲ ଶ୍ୟାମସୁନ୍ଦର ମନ ତୋଷ ବହି । ୪୭ ।

—ଚୈତନ୍ୟ ଉବାଚ

ଭଲ ସାର ତତ୍ତ୍ୱ ବାବୁ ପୃଚ୍ଛାକଲୁ ମୋତେ । ଶୁଣରେ ଶ୍ୟାମସୁନ୍ଦର ସୁଧାରସ ଏଥେ ॥ ଏ ଦେହ ଅଟଇ ମନ ଓଁକାର ସ୍ୱରୂପି । ବିଷ୍ଣୁ ବୃକ୍ଷ ବୋଲ କହୁଛନ୍ତି ସାଧୁ ତପି ॥ ମାନବ ଘଟ ହୃଦରେ ଦିବ୍ୟ ଜ୍ଞାନ ଅଛୁ । ଚେତା ଥାଇ ଭଜିଲେ ସେ ନିକଟେ ରହୁଛୁ । ପ୍ରଥମରେ ସତ ଶାନ୍ତ ଦୟା କ୍ଷମା ଧର । ଏକବିଂଶ ସହସ୍ର ଛ'ଶତ ବାୟୁ ବିହାର ॥ ଏଥିରେ ଅଜପା ଜପ ହୁଏ ନିତ୍ୟେ ମନ ॥ ସେ ଜପ ବିଧାନ ବାବୁ ହେତୁ କରି ଘେନ ।୫୨। ଦିବା ଗ୍ରହ ମିଶି

ଆଠ ପ୍ରହର ଅଟଇ । ନିଃଶ୍ୱାସ ପ୍ରଶ୍ୱାସ ଘଟ ବାହାର ହୁଅଇ ॥ ତାର ସଂଖ୍ୟା ଏକବିଂଶ ସହସ୍ର ଛଅଶତ । ସୋହଂ ହଂସ ଖେଳୁଅଛୁ ହେତୁ କର ଚେତ ॥ ସହସ୍ରାର ପଦ୍ମରେ ସେ ବିହାର କରନ୍ତି । ସଚ୍ଚିଦାନନ୍ଦ ଶ୍ରୀକୃଷ୍ଣ ଅଦ୍ଭୁତ ମୂରତି ।୫୬। ସକଳ ଭୂତରେ ସେହୁ କରିଥାନ୍ତି ବାସ । କର୍ମରୁ ଅଲଗେ ଥାଇ ସ୍ଥୂଳରେ ପ୍ରକାଶ ॥ ଅଜପା ଜପ ବିଧାନ ଶୁଣ ଆରେ ସୁତ । ମୂର୍ଖ ଆଗେ ନ କହିବୁ ମୋହର ଶପଥ ॥ ପ୍ରାତଃକାଳେ ପ୍ରଶ୍ୱାସକୁ ସଂ ହୋଇ ଟେକିବୁ । ହଂ ଅକ୍ଷରକୁ ସଧିରେ ରେଚକ କରିବୁ ॥ ମଧ୍ୟାହ୍ନରେ କୁମ୍ଭକକୁ ସମରେ ରଖିବୁ । ନିଜ ନାମ ଭଜନ ଅଂ ଭୁଲିଣ ନ ଯିବୁ ॥ ସାୟଂକାଳେ ହଂ ଅକ୍ଷର ଟେକିବୁ ଉଜାଣି । ସଂ ଅକ୍ଷରକୁ ସଧିରେ ଗୁଡ଼ୁଥିବୁ ପୁଣି ।୭୦। ଏ ଅଟେ ଚେତା ଭଜନ ତ୍ରିକାଳେ ଭଜିବୁ । ଆଉ ଯେତେକ ଭଜନ ଅଚେତା ଜାଣିବୁ ॥ ତ୍ରିକାଳ ଭଜନକୁ ଯୋଗିଏ ଜାଣିକରି । ସିଦ୍ଧ ଦେହ ବହିଛନ୍ତି ଜାଣ ହେତୁ କରି ॥ ଏ ଭାବ ନ ଜାଣି ନରେ ମାଳା ଜପୁଥିନ୍ତି । ଦେଖା ଶିଖା ମାଳ ଧରି ବଡ଼ ବୋଲାବନ୍ତି ॥ କାଳମାଳ ଗୋଟି ସେହୁ କଣ୍ଠହ ଲାଗିଛି । କାଳ ସମସ୍ତ ହୋଇଲେ କାଳଯାଏ ଘୁଞ୍ଚି ॥ ସିଦ୍ଧ ଯୋଗିମାନେ କାଳ ମାଳ ଗୁଡ଼ିକରି । ଅକାଳତ ମାଳରେଣ ସଦା ଥାନ୍ତି ଘରି ।୭୫ ପ୍ରାତଃ ମଧ୍ୟାହ୍ନ ସନ୍ଧ୍ୟା ତ୍ରିକାଳ ଯୋଗି ଜଗି । ଯୋଗରେ ପ୍ରବର୍ତ୍ତିଥାନ୍ତି ହୋଇ ଅନୁରାଗି ॥ ଅଣଷ୍ଠଶ ବାୟୁ ନେଇ ପଞ୍ଚଶେ ରଖନ୍ତି । ପଞ୍ଚଶରେ ସ୍ଥାୟୀ ଭାବେ ସୁଖେ ରହିଥାନ୍ତି ॥ ଏ ଭାବରେ ସମଭାବ ମତି ଯେ କରଇ । ଅଳପ ସାଧନେ ତାର ବାଂଛା ସିଦ୍ଧ ହୋଇ । ଏ ଭାବରେ ସ୍ଥାୟୀ ଯେବେ କରିପାରୁ ମନ । ଆପ୍ତୁ ତୋର ବୁଦ୍ଧି ହେବ ନଷ୍ଟସ୍ଥ ଭୁବନ ॥ ରେଚକ ପୂରକ କୁମ୍ଭକରେ ସ୍ଥିର କର । ନିଃଶ୍ୱାସ ପ୍ରଶ୍ୱାସ ରୁନ୍ଧ ପ୍ରଣବକୁ ଧର ।୭୦। ଏ ମାର୍ଗ ବଡ଼ କଠିନ ଆରେ ବାବୁ ଶୁଣ । ସାମାନ୍ୟ ନୁହଇ ଏହୁ ସାଧନା ଲକ୍ଷଣ ॥ ଅନ୍ନାଧାର ପ୍ରାଣରେ ଏ

ସାଧନ କୁହଇ । ସାଧିଲେ ଅଳପ ଦିନେ ପୀଡ଼ା ଆକର୍ଷଇ ॥ ରଜ ତମୋ ଗୁଣରୁ ଆପ୍ତୁଭି କରୁ ଯେବେ । ଏହି ପ୍ରଣବ ସାଧନା ସାଧି ପାରୁ ତେବେ ॥ ରଜ ତମୋ ନ ତେଜଣ ପ୍ରଣବ ଯେ ଧରେ । ଶରୀର ପୀଡ଼ିତ ହୋଇ ଆୟୁ କ୍ଷୟ କରେ ॥ ତୁଳସୀ ମାଳ ଭଜନ ଯେତ୍ତ ପରକାର । ଶୁଣରେ ବାଉଳି ଶ୍ୟାମ କରିବା ବିସ୍ତାର ।୨୫।

ଶ୍ଳୋକଃ

ମାଳରୂପଂ ବଳଦେବଂ ଶୁଭଦ୍ରା ସୂତ୍ର ରୂପିଣୀ ।
ଜଗନ୍ନାଥ ମେରୁ ରୂପଂ ମାଳା ରୂପଂ ନମୋଃ ନମୋଃ ॥

ହରେ ସୂତ୍ରଂ ଶେଷଦେବଂ ରାମଭଦ୍ରାଙ୍କ ମାଳିକା ।
କୃଷ୍ଣ କିଶୋର ମେରୁନା ହରେ ଗ୍ରନ୍ଥିତ ରୂପୋପି ॥

ଶତ ଅଷ୍ଟୋତ୍ତର ମାଳା ଦ୍ୱାତ୍ରିଂଶାକ୍ଷରମାପିତଂ ।
ଜିହ୍ୱାଗ୍ରେ ନାମ ସଂଯୁକ୍ତଂ ମେକୈକଂ ମାଳ ସଂଖ୍ୟକଂ ॥

ଉଦାକାରେ ଭବେତ୍ ଝୁଲ୍ଲ ଗୁରୁଦେବ ତମଞ୍ଚିତଂ ।
ସଂସାର ତାରଣ ଅର୍ଥେ ଝୁଲ୍ଲଞ୍ଚ କରେ ଧାରଯେତ୍ ॥

ଅନନ୍ତ କୁଣ୍ଡଳଶ୍ଚୈବ ଫଣୀଙ୍କମଣୀଙ୍କ ସ୍ତଥା ।
ସଖାସ୍ୟାଂ ପୃଚ୍ଛସି ବାକ୍ୟଂ ଯୋ ଜାନାତି ସ ପଣ୍ଡିତଂ ॥

ଝୁଲ୍ଲ ମଧ୍ୟେ ସ୍ଥିତୋ କୁଞ୍ଜ ନିକୁଞ୍ଜ କୁଞ୍ଜମେ ତଥା ।
ମଧ୍ୟେ ଶ୍ରୀକୃଷ୍ଣ ବ୍ରଜଯେ ରାଧାଦି ସଖିବେଷ୍ଟିତଂ ॥

ତ୍ରିଭଙ୍ଗି ଭଙ୍ଗିମରୂପଂ ବେଣୁହସ୍ତଙ୍କବଲ୍ଲଭଂ ।
ଗୋପୀମଣ୍ଡଳ ମଧ୍ୟସ୍ଥଂ ଶୋଭିତଂ ନନ୍ଦନନ୍ଦନଂ ॥

ନାମଯଜ୍ଞେ ମହାଯଜ୍ଞ କଳୌ କଲ୍ମଷ ନାଶନଂ ।
କୃଷ୍ଣଚୈତନ୍ୟ ପ୍ରୀତ୍ୟର୍ଥେ ନାମଯଜ୍ଞ ସମର୍ପଣମ୍ ॥

ନାମ ଚିନ୍ତାମଣି ରୂପଂ ନାମୈବ ପରମାଗତିଃ ।
ନାମ୍ନଃପରତରଂ ନାସ୍ତି ତସ୍ମାନ୍ନାମ ଉପାସ୍ମହେ ॥

ଝୁଲ ମାଳାର ଭଜନ ଶୁଣ ଭୁଲମନ । ନ ହଲିବ ଦନ୍ତ ଜିହ୍ୱା ଓଷ୍ଠ ଚକ୍ଷୁ ଜାଣ ॥ ନିଃଶ୍ୱାସ ପ୍ରଶ୍ୱାସେ ମହାମନ୍ତ୍ର ଚଳାଇବୁ । ସଂଖ୍ୟା ପାଇଁ ତୁଳସୀ କଣ୍ଠିକ ଗଡ଼ାଇବୁ ॥ ଝୁଲଗୋଟି କୁଞ୍ଜ ଅଟେ ନାନା ମନୋହର । ନିକୁଞ୍ଜ କୁଞ୍ଜ ଭିତରେ ଲୀଳା କାରବାର ॥ ନିକୁଞ୍ଜ କୁଞ୍ଜେ ଶ୍ରୀକୃଷ୍ଣ ରାଧାଙ୍କ ସଙ୍ଗେଣ । ଚତୁର୍ଦ୍ଦିଗେ ବେଢ଼ି ରହିଛନ୍ତି ସଖିଗଣ ॥ ଏ ରୂପେ ସେବା କରନ୍ତି ଅଷ୍ଟସଖି ଜାଣ । ଭାବ୍ୟ ଭାବନା କରି ଝୁଲରେ ଦିଅ ମନ ।୮୦। କାମ ଗାୟତ୍ରୀକି ଚିନ୍ତି କାମନା ଛାଡ଼ିବୁ । ଜପ ସଂଖ୍ୟା ଶେଷେ କୃଷ୍ଣେ ଅର୍ପଣ କରିବୁ ॥ ବାହ୍ୟରେ ମାଳା ଭଜନ ଶୁଣିଲୁରେ ମନ । କାମନା ନ ରଖି ଭଜୁଥିବୁ ରାଧାଧନ ।୮୨।

—ଶିଷ୍ୟ ଉବାଚ—

ବାଞ୍ଛିଲା ମନ ସୁମନେ ଶୁଣି ତା ଏ ଯୁକ୍ତ । ପଦ୍ମପାଦେ ପଡ଼ି ଗଡ଼ ହୁଅଇ ବସନ୍ତ ॥ ମୋ ଗୁରୁ ସଂଶୟ ଏବେ ହେଲା ଏହା ଶୁଣି । ସୂକ୍ଷ୍ମ ସାଧନା ପ୍ରଣାଳୀ କହନ୍ତୁ ବଖାଣି ॥ କର ଯୋଡ଼ିଣ ବିନୟେ ଯଣ୍ଟରୁଛି ମୁହିଁ । ସାରସୁଧା ଗୀତମତେ ଠୁଳେ ଦୟନ୍ତୁ କହି ।୮୫। ସୃଷ୍ଟି ଆଦ୍ୟେ ବିଧାତାଙ୍କୁ କହିଥିଲେ ଯାହା । ତାହା ମତେ ବୁଝାଇଣ କହ ବିହି ଦୟା ॥ ଅଧମ ଅଜ୍ଞାନୀ ମୂଢ଼ ଅଟେ ଗୁରୁଦେବ । ମୋ ମନୁ ସଂଶୟ ଛେଦ କର ମହାଭାଗ ।୮୭।

—ଚୈତନ୍ୟ ଉବାଚ—

ଶୁଣ ତୁ ମନ ଯଜନ ଅଜପା ବିଧାନ । ମୂର୍ଖ ଆଗେ ନ କହିବୁ ଏହା କେବେ ପୁଣ ॥ ତତ୍ତ୍ୱ ଶୁଦ୍ଧି କରି କୁଶାସନେ ବସି ଥାବୁ । ସତ ଶାନ୍ତ ଦୟା କ୍ଷମା ହୃଦେ ଧରିଥିବୁ ॥ ଯୋଗ ଆସନର କଥା ଶୁଣ

ଆରେ ବତ୍ସ । ଏକ ପାଦ ଗୁହ୍ୟେ ଦେଇ ଆଣ୍ଠୁ ମାଡ଼ି ବସ ।୯୦। ଆର ଏକ ପାଦ ସ୍ୱାଧିଷ୍ଠାନ ଚକ୍ରେ ଦେବୁ । ଦୁଇ ପାଣି ଜାନୁପରେ ସଳଖି ରଖିବୁ ॥ ଷୋଳ ଡମ୍ବରୁକୁ ଠେଲି ଟାଣି ଧରିଥିବୁ । ଖେଚରୀ ମୁଦ୍ରା ଧରି ଧନୁରେ ଗୁଣ ଦେବୁ ॥ ଗରୁଡ ପୃଷ୍ଠକୁ ବଳା ଘୂର୍ଣ୍ଣି ରହି-ଥିବୁ । ଡୋଳା ଖେଳାଇ ନ ଦେବୁ ତେଜକୁ ଚୁପିବୁ ॥ ବୀଜଠାରେ ମନ ରଖିଥିବୁ ଆରେ ବତ୍ସ । ହଂସ ସୋହଂ ଧରି ବଳା ଉଜାଣିବୁ ପୁଚ୍ଛ ॥ କୁର୍ମି ଧୂର୍ମି ଜ୍ୟୋତି ଜ୍ୱାଳା ଘୂରିରେ ଚାହିଁବୁ । ବାର ଘୂରି ନେଇ ବ୍ୟୋମ ହିଗେଣ ଥୋଇବୁ ।୯୫। ସ୍ଥିର ଅଙ୍ଗ ପାଳଟାଇ ସ୍ଥିର ଯେବେ ହେବୁ । ଅବ୍ୟକ୍ତ ଅନାଦି ଲୀଳା ନୟନେ ଦେଖିବୁ ॥ ଅଜପରେ ଜପିବୁଟି ଜପିବା ନାମକୁ । ହେତୁ କରିଥାଅ ବଳା ଅଜପା ଭେଦକୁ ॥ ତାଙ୍କଠାରେ ବିନାୟକ କାମଦେବ ବ୍ରହ୍ମା । ନାରାୟଣ ହରି ଭକ୍ତ ହେଉଛନ୍ତି ବଣା ॥ ପ୍ରେମ ବୋଲିବା ପଦାର୍ଥ ଅଙ୍କୁରିବ ଯେବେ । ଗଦ୍‌ଗଦରେ କୃଷ୍ଣ ଭାବ ପ୍ରକାଶ ପାଇବେ ॥ କୃଷ୍ଣ ନାମ ଶ୍ରବଣରେ ଅଙ୍ଗ ପୁଲକିତ । ରୋମାଞ୍ଚିତ ହେବ ଲୋମ ହେବ ଅଶ୍ରୁପାତ ॥ କୃଷ୍ଣଙ୍କ ଅମୂଲ୍ୟ ଧନ ଏ ଭାବରୁ ଜାତ । ବାତ୍ସଲ୍ୟ ମଧୁର ଶାଖା ତା ପାଶେ ଗ୍ରଥିତ ॥ କୃଷ୍ଣ ମୋର ପ୍ରାଣପତି କୃଷ୍ଣ ମୋ ଜୀବନ । କୃଷ୍ଣ ମୋ ନୟନ ରତ୍ନ କୃଷ୍ଣ ମୋ ଭୂଷଣ ॥ ସଦଗୁରୁ ପାଇଥିଲେ ଲଭଇ ସେ ନର । ପ୍ରସନ୍ନ ହୁଅନ୍ତି କୃଷ୍ଣ ବ୍ରହ୍ମାଣ୍ଡ ଈଶ୍ୱର ॥ ଛଳ କୁଟିଳ କପଟ ଦାମ୍ଭିକ ପଣକୁ । କେବେ ସ୍ଥାନ ଦେବୁ ନାହିଁ ତୋର ହୃଦୟକୁ ॥ ତୃଣର ପରି ନିଉନ ଭାବରେ ହୋଇବୁ । ତରୁପରି ସହିଥିବୁ ମୁଖ ନ ଖୋଲିବୁ । ୧୦୫। ସକଳ ଘଟରେ କୃଷ୍ଣ ବିହରନ୍ତି ସେହି । ତେଣୁ ସର୍ବଘଟେ ସମଦର୍ଶୀ ଥିବୁ ରହି ॥ ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତ ପୂରି ରହିଛନ୍ତି । ଖେଳାଇ ଖେଳନ୍ତି ହରି କେହି ନ ଚିହ୍ନନ୍ତି ॥ ସିଦ୍ଧ ଉପଦେଶ ଏହି ଶୁଣ ଭୁଲ ମନ । ସତସଙ୍ଗରେ କହିବୁ ମନୁ ଛାଡ଼ି ଭ୍ରମ । ତାର୍କିକ

ତାନ୍ତିକ ସଙ୍ଗେ ସଙ୍ଗ ନ ହୋଇବୁ । ବେଦରେ ଥାଇ ନବେଦ ଆଶ୍ରୟ କରିବୁ ॥ ଶୁଣିଲୁ ଅଜପା ଜପ ବିଧାନ କରି ଲୟ । ଦିନମଣି ଅସ୍ତା-ଚଳେ କଲେଣି ଆଶ୍ରୟ ।୧୧୦। ସିଦ୍ଧ ଗିରି ପାହାଡରେ କରୁଛୁ ଗୁହାରି । ଶ୍ୟାମସୁନ୍ଦର ଗନ୍ତାସୂତ ତବ ସେବା କରି ॥ ଏକଶତବାର ପଦ୍ୟେ ଏ ଅଧ୍ୟା ସମାପ୍ତ । ବାଉଲ ଶ୍ୟାମ ଧ୍ୟାଇଛନ୍ତି ହଂସ ସୋହଂ ସୂତ୍ର ।୧୧୨।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ଯୋଗଶାସ୍ତ୍ରେ ମନଚୈତନ୍ୟ ସମ୍ବାଦେ ସାରସୁଧା ଗୀତା ନାମେ। ପ୍ରଥମ ଅଧ୍ୟାୟଃ ।

—*—

## ଦ୍ୱିତୀୟ ଅଧ୍ୟାୟ

—ମନ ଉବାଚ—

ଆରବିନ ପ୍ରଶ୍ନତରୁ ନିତ୍ୟକର୍ମ ସାରି । ସିଦ୍ଧଗିରି ପୃଷ୍ଠରେ ଅଛନ୍ତି ହଜେକରି ।୧। ଅମନେ ମନକୁ ଦେଇ ବିହାର କରନ୍ତି । ବାଉଲ ମନ ଗଦ୍‌ଗଦେ ବିନୟେ ପୁଚ୍ଛନ୍ତି ॥ କରପଦ ଯୋଡ଼ି ମନ ଚରଣେ ପଡ଼ିଣ । କୃତାର୍ଥ ହୋଇଲେ ମୋର ପିତୃଗଣମାନ ॥ ନିରବଧି ପାଦପଦ୍ମେ କରି ଅଛୁ ଆଶ । ଘଟରେ ବୃନ୍ଦାବନ୍ତମାନ କହ ହୃଷିକେଶ ॥ ଷଟଚକ୍ର ପ୍ରଣାଳୀକ ପ୍ରଥମେ କହିବ । କେଉଁସ୍ଥାନେ କେଉଁ ଦଳ ବୁଝାଇଣ ଦେବ ।୫। କେଉଁଠାରେ କେଉଁ ବୀଜ ହୁଏ ଉପସ୍ଥିତ । କି କି ବର୍ଣ୍ଣ ଧରି ସେହୁ ହୋଇନ୍ତି ପ୍ରକାଶିତ ॥ କେ ସ୍ଥାନେ କେତେ ଭଜନ ଭଜିବୁ ଭୁରିତ । ଆବରି ଦେବତା ସ୍ଥାନ କରି ନିରୁପିତ ॥ ସମସ୍ତ ଭେଦ ବୁଝାଇ ମନରୁ ସଂଶୟ । ଦୂରକର ମହାପ୍ରଭୁ ହୋଇଣ ଉଦୟ ॥ ଗାୟତ୍ରୀ ମନ୍ତ୍ରର ସାର ବୀଜ ପରମାଣି । ପଞ୍ଚଭୂତ ଆତ୍ମା ଜ୍ଞାନ ବୁଝାଇବ ପୁଣି ॥ ନବ ଫଳା ସହିତରେ ଛନ୍ଦ ହୋଇଥିବ । ଭ୍ରାନ୍ତି ଫିଟାଇଣ କହ ଆହେ ଗୁରୁଦେବ ଛିହୋପୂଜା ବଟମୂଳେ ଘୁମୁଛ କାହିଁକି । କଳର ବେଳ ହୋଇଲା

ଉଦ୍ଧାର ମସ୍ତକ ॥ ମନ୍ତ୍ରମା ପ୍ରକାଶ କର ଭୁଟ୍ଟୁ ଘୋର କଳ । ସମାଧି ଶେଷ ହୋଇଲା ନେତ୍ର ହଅ ସ୍ଥିର ॥ ଲାଗିଲଣି ଧୁକା ପ୍ରଭୁ ଶିଖର ଊର୍ଦ୍ଧରେ । ଚିତ୍ତକୁ ଚେତାଇ ଦିଅ ମଣିନାଗ ପୁରେ ॥ ହରତା କରତା ଭୁକ୍ତ କର୍ମଦାତା ହୋଇ । ସଂସାର ପାଳନା କର ଶୂନ୍ୟମାର୍ଗେ ରହି ॥ ସୁର ସର୍ମାର ନାଗ ନୃପତି ନଧିଧର । ତବ ମନ୍ତ୍ରମାରେ ଲର୍ଘି ଛନ୍ତି ନିରନ୍ତର ।୧୭। ନମିଷକେ ନାଶ କରିପାର ଇଚ୍ଛା ହେଲେ । କଳ୍ପଭୁକ ଦେଖୁଅଛ ମାଳଗିରି ଶୈଳେ ॥ ମାଳଇନ୍ଦ୍ରବର କାନ୍ତି ପ୍ରଫୁଲ୍ଲ ନୟନ । କରି କୃପା ଦାନ ସ୍ଥାନ ଅଧମେ ତାରଣ ॥ ଅତସ୍ୱୀ ଅଜ୍ଞାନ ମୂର୍ଖ କରିଅଛୁ ଆଶ । ଜ୍ଞାନ ନେତ୍ର ଦାନକର କମଳା ବିଳାସ ।୧୮।

—ଚୈତନ୍ୟ ଉବାଚ—

ମନର ବଚନସ୍ତୁ ଜାଣି କହନ୍ତି ଚୈତନ । ହେ ମନ ଅଥର୍ବବେଦ କରି ତୁ ଶ୍ରବଣ ॥ ଅତ୍ୟନ୍ତ ଗୁପତ କଥା କାହିଁ ରଖିଥିଲୁ । ସମସ୍ତ ବେଳକୁ ଆସି ପ୍ରକାଶ କରିଲୁ ।୨୦। ସମସ୍ତ ଆସିଛି ଏବେ ସର୍ବେ ଏକ ହେବ । ବେଦର ମହତ୍ତ୍ୱ ଆଉ କିଛି ନ ରହିବ ॥ ତେବେ ତୁ ନିଜ ସମ୍ପଦ ପାଇବୁରେ ଧନ । ଏ କଥା ନୁହଇ ମିଥ୍ୟା ନିଶ୍ଚୟ ତୁ ଘେନ ॥ ଶୁଣ ତୁ ମନ ରଜନ ଅପୂର୍ବ କାହାଣୀ । ବ୍ରହ୍ମାଣ୍ଡ ଜନ୍ମ ଏଠାରେ ବଖାଣିବା ପୁଣି ॥ ମୂର୍ଖ ଆଗେ ନ କହିବୁ ମୋହର ଶପଥ । ଆତ୍ମା ଜ୍ଞାନ ବିନା କେହି ନ ଜାଣନ୍ତି ତତ୍ତ୍ୱ । ମନ୍ତ୍ର ଯନ୍ତ୍ର ତନ୍ତ୍ର ବ୍ରହ୍ମାଣ୍ଡ ଅଙ୍ଗେ ରହିଛି । ଜ୍ଞାନ ନେତ୍ରେ ଦେଖିଲେ ତୁ ପାଇବୁରେ ବହି ।୨୧। ଛନ୍ଦଣ ସତର ଫଳା ଚରଣେ ଖେଳୁଛି । ଆଧାର ଚକ୍ର ପର୍ଯ୍ୟନ୍ତ ଶୋଭା ପ୍ରକାଶୁଛି ।୨୨।

| ଶ୍ଲୋକଃ | ଅର୍ଥ |
| --- | --- |
| ଅପାନ ଗୁହ୍ୟଦେଶେତୁ— | ଗୁହ୍ୟ ଦେଶରେ ଅପାନ ବାୟୁ |
| ସମାନ ନାଭିମଣ୍ଡଳେ— | ନାଭିମଣ୍ଡଳେ ସମାନ ବାୟୁ |
| ହୃଦେ ପ୍ରାଣ ସ୍ଥିତେ୍ୟ ନିତ୍ୟଂ— | ହୃଦଦେଶେ ଉଦାନ ବାୟୁ |

ଉଦାନ କଣ୍ଠ ମଧ୍ୟଗଃ— କଣ୍ଠ ଦେଶେ ଉଦାନ ବାୟୁ

ବ୍ୟାନ ସର୍ବ ଶରୀରଗେ— ସମସ୍ତ ଶରୀରରେ ବ୍ୟାନ ବାୟୁ

ପ୍ରଧାନ ପଞ୍ଚବାୟବଃ— ଏପରି ପଞ୍ଚବାୟୁ ପ୍ରଧାନ କାରଣ ଅଟେ




ଆଧାରନ୍ତୁ ଭବେତ୍‌ଗୁହ୍ୟଂ
ଗୁଦଚକ୍ର

ଚତୁର୍ଦ୍ଦଳ ପଦ୍ମଚକ୍ର ବିବରଣ ଶୁଣ । ଇନ୍ଦୁର ବାହନ ଛନ୍ତି ଦ୍ୱାର ଆବୋରଣ ॥ ଚତୁର୍ଦ୍ଦଳ ମଧ୍ୟରେଣ ବ ଶ ଷ ସ ଜାଣ । ବେଷ୍ଟିତ ହୋଇ ଅଛନ୍ତି ଯେ ଯାହା ସ୍ଥାନେଣ ॥ ବକ୍ରତୁଣ୍ଡୀ ଗଣପତି ବିହାର କରନ୍ତି । ଛଅହଜାର ହଂସ ସୋହଂ ଧରିଛନ୍ତି ॥ ଦୁଇ ହଜାର ତିନଶ ଉଜ୍ଜ୍ୱଳ ହେଉଛନ୍ତି । ମାଣିକ୍ୟ ତେଜ ପ୍ରକାଶି ତିମିର ନାଶୁଛନ୍ତି ॥ ହ୍ରୀଂ ବକ୍ରତୁଣ୍ଡୀ ଗାୟତ୍ରୀକୁ ପ୍ରଥମେ ଜପିବୁ । ବକ୍ରତୁଣ୍ଡାୟ ବିଦ୍ମହେ ଜପେ ଚେତାଇବୁ ॥ ଗୌରିପୁତ୍ରାୟ ଧୀମହି ବିଘ୍ନ ବିନାଶନ । ବିଘ୍ନରାଜ ପ୍ରଚୋଦୟାତ ହୁଅ ପ୍ରସନ୍ନ ॥ ନମୋଃଗଣେଶ ବିଘ୍ନେଶ ଶଙ୍କରଙ୍କ ସୁତ । ମମବିଘ୍ନ ନାଶକର ସୁଧା ଲଡ଼ୁ ହସ୍ତ ॥ ଅପାନ ବାୟୁରେ ତବ ବିହାର ହୁଅଇ । ଚ୍ଛରି ଫଟିକାର ଧରି ଆଗେ ଅଛି ରହି ॥ ପିଣ୍ଡ ବ୍ରହ୍ମାଣ୍ଡରେ ଅଗ୍ରଗଣ୍ୟ ହୋଇ ରହି । ଆଦ୍ୟ ଦେବତାଙ୍କୁ ଚେତା କରୁଥାନ୍ତି ସେହି ।୩୬। ସେହି ବିଘ୍ନରାଜଙ୍କୁ ତୁ ମନାଇବୁ ଯେବେ । ବିନାଶ

ଯିବ ତୋହର ନ ଭୁଲିବୁ କେବେ । ଚତୁର୍ଦ୍ଦଳ ଠାବମାନ ଶୁଣିଲୁରେ ମନ । ଷଟ ଦଳଭେଦ ଜ୍ଞାନ ହେତୁ କର ଧ୍ୟାନ ।୩୭।




ସ୍ୱାଧିଷ୍ଠାନସ୍ଥ ଲିଙ୍ଗଙ୍କ ଲିଙ୍ଗଚକ୍ର

ଷଟଦଳ ପଦ୍ମବେଢି ଷଡ଼କ୍ଷର ସ୍ଥିତ । ବ ଭ ମ ଯ ର ଲ କ୍ଷର ଉଚ୍ଚରନ୍ତ ବସନ୍ତ ॥ ଡାକୁକ ବାହନ ଦ୍ୱାର ଜଗିଣ ଅଛନ୍ତି । ରତି କାମଦେବ ଦୁହେଁ କ୍ଲୀଁ ବିଳାସନ୍ତ ॥ କାମବୀଜ ଧ୍ୟାନ କାମଦେବ ଜପୁଛନ୍ତି । କାମ ଗାୟତ୍ରୀ ମନ୍ତ୍ରରେ ଛୁଟାଇବୁ ଭ୍ରାନ୍ତି ।୪୦। କ୍ଲୀଁ କାମଦେବାୟ ବିଦ୍ମହେ ହୃଦୟେ ଚିନ୍ତିବୁ । ପୁଷ୍ପବାଣାୟ ଧୀମହି ବୋଲଣ ଭାଷିବୁ ॥ ତନ୍ନୋନଙ୍ଗ ପ୍ରଚୋଦୟ ଠାରେ ରସିଥିବୁ । କାମ ଗାୟତ୍ରୀ ସ୍ମରଣ ନିଦ୍ରାକୁ ଜଗିବୁ ॥ ଦୁଇ ସହସ୍ର ସ୍ମରଣ ହଂସ ଜପୁଅଛି । ହଂସ ଆକଟ କରିବୁ କାମଦେବ ଚିହ୍ନି । ଷଡ଼ରଥି ଜଗିଛନ୍ତି ଐରାବତ ଧର । ନତମସ୍ତକ ହୋଇବୁ ତଥି ଦେଖିକର ॥ ଜଳନ୍ଧର ବୃନ୍ଦ ମନ ଭେଦ ଯିବୁ ଯେବେ । ନବରତ୍ନ ପ୍ରାପ୍ତ ହେବ ଅକ୍ଳେଶରେ ତେବେ ।୪୫। ପ୍ରବୃତ୍ତି ନିବୃତ୍ତି ସ୍ଥାନ ଫଳାଫଳ ଚିହ୍ନ ! ରମ୍ଭା ଶୁକ୍ର ସମ୍ପଦଟି ଅଟଇ ସେ ସ୍ଥାନ ॥ ଷଟଦଳ ରହସ୍ୟ ଶୁଣିଲୁ କରେ ସୂଚ ॥ ଦଶ ଦଳର ବୃତ୍ତାନ୍ତ କରିବା ବ୍ୟକତ ।୪୬।

ମଣିପୁର ଭେଦନାଭ

## ନାଭଚକ୍ର




ମଣିପୁର ପଦ୍ମରେଣ ଦଶଦଳସ୍ଥିତ । ଡ଼ ଢ ଣ ତ ଥ ଦ ଧ ନ ପ ଫ ଟି ବେଷ୍ଟିତ ॥ ହଂସବାହନ ସେଠାରେ ଦୁଆସ ହୋଇଛୁ । ବ୍ରହ୍ମା ସାବିତ୍ରୀଙ୍କ ସୃଷ୍ଟି ସର୍ଜନା ଲଗିଛୁ ॥ଷସ୍ଥର ଦକ୍ଷସ୍ଥାନକୁ ଆବୋରୁ ଅଛନ୍ତି । ରମା ବୀଜ ଘେନ ବ୍ରହ୍ମା ବେଦ ବଖାଣନ୍ତି ।୫୦। ବ୍ରହ୍ମା ଗାୟତ୍ରୀ କ ବଳା ବଳାଇବୁ ତତ୍ତ୍ୱ । ଶ୍ରୀଁ ସୂର୍ଯ୍ୟାଷ୍ଟାସ୍ୱବତ୍ତ୍ୱେ ଚନ୍ଦ୍ର ଅବିରତ ॥ ଚତୁର୍ବସ୍ତାସ୍ୱ ଧୀମନ୍ତ ସତତରେ ସ୍ମର । ତତ୍ତ୍ୱୋ ବ୍ରହ୍ମା ପ୍ରଚ୍ଛେଦସ୍ୟାତ୍ ବ୍ରହ୍ମରେ ବିହର ॥ ବ୍ରହ୍ମା ଗାୟତ୍ରୀ ଏ ଅଟେ ବ୍ରହ୍ମାଙ୍କର ଜପ । ହଂସ ଆକର୍ଷି କରିବୁ ହଂସେ ହେବୁ ଲୋପ ॥ ତିନ ସହସ୍ର ସ୍ମରଣ ଭଜନ ଲଗିଛୁ । ସାତଶ ବାସ୍ତର ନାଡ଼ି ଗଣ୍ଠି ପଡ଼ିଅଛୁ ॥ ଦଶ ଦିଗପାଳତହିଁ ଆବୋରି ଅଛନ୍ତି । ଅଣବୃଶବାୟୁ ଷଡରିପୁ ରହିଛନ୍ତି ॥ ଅଷ୍ଟଧାତୁ ସିଦ୍ଧିଅଛୁ ପ୍ରାନର ପବନେ । ଅଗ୍ନିଦେବତା ଭୁଞ୍ଜନ୍ତି ଲହୁବୁନ୍ଦୁ ସ୍ଥାନେ ।୫୭। ଚବିଶ ବର୍ଷ ଦୁହିଁଙ୍କର ବିହାର ଲଗିଛୁ । ଲକ୍ଷ୍ମୀ ନାରାୟଣ ଲୀଳା ବ୍ରହ୍ମାଣ୍ଡେ ଘୋଟିଛୁ ॥ ସମାନ ପବନ ସେହି ଠାବରେ ବହଇ । ଦଶ ରଶ୍ମି ରହିଛନ୍ତି ପରିବାର ହୋଇ ॥ ରମା ବୀଜ ଭଜନଟି ସେ ମୃଣାଳ ସ୍ଥାନ । ବ୍ରହ୍ମା ସାବିତ୍ରୀ ହଂସରେ ହୁଅନ୍ତି ମିଳନ ॥ ଦଶ

ଦଳର ବୃତ୍ତାନ୍ତ ଶୁଣିଲୁରେ ସୁତ । କାହିଁ ରହିଥିଲୁ ବଳା ଗଦ୍ଗଦ ଚରିତ ।୭୦। ଅନାହତ ପଦ୍ମ କଥା ହେତୁ ଦେଇ ଧର । ଧରି ପାରିଲେ ହୋଇବୁ ଅଜର ଅମର ॥

ଅନାହତଚଂକ୍ରଦସ୍ୟଂତଥା

ହୃଦଚକ୍ରୀ




ହୃଦଚକ୍ର ବୋଲାଉଛି ସେ କମଳ ନାମ । ଭକ୍ତିଭାବେ ଚେତିଲେ ପାଇବୁ ମୁକ୍ତିଧାମ ॥ ଦ୍ୱାଦଶ ପାଖୁଡ଼ା ସେହୁ ଶୋଭା ଧବଳର । ଆଧ୍ୟାତ୍ମିକେ ବହରନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥ କଖ ଗଘ ଙ ଚ ଛ ଜ ଝ ଞ ଟ ଠ ଦଳ । ଗ୍ରନ୍ଥିତ ହୋଇ ଅଛନ୍ତି ଦ୍ୱାଦଶ ମାତ୍ରିକ ॥ ବନିତା ସୁତ ସେଠାରେ ଦୁଆସ୍ଥି ଅଟନ୍ତି । ଲକ୍ଷ୍ମୀ ନାରାୟଣ ସେଠା ଲୀଳା ବିଳାସନ୍ତି ।୭୪। ହଂସରେ ହଂସ ମିଶିଣ ହେଉଛନ୍ତି ଭଜନ । ଆଠ ସହସ୍ର ଆଠଶ ଭଜନରେ ପୂର୍ଣ୍ଣ ॥ ବିଷ୍ଣୁଙ୍କର ପୁର ସେହୁ ସୃଜଅଛି ଧାତା । ବୈକୁଣ୍ଠପୁର ନାମରେ ହୋଇଅଛି ଖ୍ୟାତା ॥ ସ୍ଫଟିକ ବର୍ଣ୍ଣ ପୀତ ବସନ ପରିଧାନ । କାମ ବୀଜ ଭଜନରେ ହୋଇଅଛି ପୂର୍ଣ୍ଣ । ନାରାୟଣ ଗାୟତ୍ରୀ ଏ ଆଧ୍ୟାତ୍ମ୍ୟ ଚକ୍ରକୁ । ନାରାୟଣାୟ ବିଦ୍ମହେ ବୋଲି

ଜ୍ଞାନ ହେବୁ ॥ ବାସୁଦେବାୟ ଧୀମହି ସେ ଯେ ବାସୁଦେବ । ତନ୍ନୋନଙ୍କ ପ୍ରଚୋଦୟାତ୍ ବାସୁଦେବ ଦେବ ।୭୦। ନାରାୟଣ ଗାୟତ୍ରୀ ଏ ଶୁଣିଲୁରେ ବତ୍ସ । ହେତୁଜର ରଖିଥିବୁ କର ସମକକ୍ଷ ॥ ପ୍ରାଣ ବାୟୁର ଦ୍ୱାର ଅଟଇ ସେ ସ୍ଥାନ । ଦ୍ୱାଦଶ ପ୍ରହର ଛନ୍ଦ ଦ୍ୱାର ଆବୋରଣ ॥ ଦ୍ୱାଦଶ ଦଳ ବୃତ୍ତାନ୍ତ ଶୁଣିଲୁରେ ମନ । ଜଣ୍ଠଚଟେ ମାଳକଣ୍ଠ ମନାଇବୁ ଜାଣ ॥



ବିଶୁଦ୍ଧ କଣ୍ଠଦେଶେଣ୍ଡୁ

କଣ୍ଠ ଚକ୍ର

ଷୋଡ଼ଶ ଦଳର ଆଖ୍ୟା ଧୀର ଚତେ ଶୁଣ । ବିଶୁଦ୍ଧ ଚକ୍ର ବୋଲିଣ କଣ୍ଠ ଦେଶ ସ୍ଥାନ ॥ ହରିହର ଏକ ଅଙ୍ଗ ଧରି ରହିଛନ୍ତି । ପନ୍ନଗଭୂଷଣ ଅଙ୍ଗେ ଶୋଭା ପାଉଛନ୍ତି ।୭୫। ଶିବାଙ୍କୁ ଘେନଣ ଶିବ ଅଙ୍ଗେ ଅଙ୍ଗ ଦେଇ । ଭଜନ କରନ୍ତି ଆଜ୍ଞା ଚକ୍ରେ ଲୟ ଥୋଇ ॥ ବୃଷଭ ଦୁଆରୀ ହୋଇ ଆବୋରି ରହିଛି । ଷୋଳ ଡମ୍ବ ରୁ ଗଳାରେ ଶୋଭା ପ୍ରକାଶୁଛି ॥ ଅ ଆ ଇ ଈ ଉ ଊ ଋ ୠ ତାହାଙ୍କୁ ଷରନ୍ତି । ଌ ୡ ଏ ଐ ଓ ଔ ଅଂ ଅଃ ବାମରେ ଚଳନ୍ତି ॥ ଷୋଳ ଦଳରୁ

ଉଦାନ ବାୟୁ ବିହରନ୍ତି । ବ୍ୟାନ ବାୟୁକୁ ଆଶ୍ରୟ କରି ରହିଥାନ୍ତି ।
ହଂସର ଭଜନ ଦୁଇ ସହସ୍ର ଗୁଣିଶ । ପରମ ବୀଜରେ ସଦା
ରଖାଇ ମାନସ ।୬୦। ଶୁଦ୍ଧ ଶୁକ୍ଳ ବର୍ଣ୍ଣ କନ୍ଦର୍ପର ଦର୍ପହାରି । ଜଳକୁ
ସୃଷ୍ଟି ରହିଛନ୍ତି ପ୍ରତିବିମ୍ବ ପରି ॥ ଶିବଙ୍କୁ ମନାଇଁ ଶିବ ଗାୟତ୍ରୀ
ଜପିବୁ । କାମଦେବାୟ ବିଦ୍ମହେ ବୋଲି ପ୍ରଣମିବୁ ॥ ଉମ କାନ୍ତାୟ
ଧୀମହି ଯୋଗାଧି ପୁରୁଷ । ତନ୍ନୋରୁଦ୍ର ପ୍ରଚୋଦୟାତ୍ ଠାରେ ଥିବ
ଆଶ ॥ ଉଦାନ ବାୟୁ କଣ୍ଠରେ ବହେ ଘନ ଘନ । ଷୋଳଅରୁଁ ବିହରନ୍ତି
ବ୍ୟୂହ ମଧ୍ୟରେଣ ॥ ଷୋଳ ଦଳର ଆଖ୍ୟାନ ଶୁଣି ହୁଅ ତୋଷ ।
ବୃନ୍ଦାବତୀଙ୍କି ନମିବୁ କରାଇ ହରଷ ।୮୫।

ଶ୍ଳୋକଃ

ନ ପୂଜା ନ ଜପୋ ଯଜ୍ଞୋ ଭିଷ୍ଣୁଭାବନା ଭବେନ୍ନର ।
ପ୍ରସନ୍ନା ଭବଦେବେସି ଶ୍ରୀକୃଷ୍ଣ ଭକ୍ତି ପ୍ରଦାୟିନୀ ॥
ପୂଜିତାମୂନର୍ଭିଃସର୍ବେ ରଚିତାତ୍ୱଂ ସୁରାସୁରୈଃ ।
ପ୍ରସନ୍ନା ଭବଦେବେସି ବୃନ୍ଦାତ୍ୱଂ ତୁଳସୀ କଳୌ ॥
ନର୍ମିତାତ୍ୱଂ ପୁରାଦେବୈ ରର୍ଚ୍ଚିତାତ୍ୱଂ ସୁରାସୁରୈଃ ।
ତୁଳସୀ ହରମେ ପାପଂ ପୂଜାଗୃହଂ ନମୋଽସ୍ତୁତେ ॥

ତୁମ୍ଭେ ମୋର ମାତା ଅଟ ଆଗୋ ବୃନ୍ଦାବତୀ । ତବ ମୂଳେ
ଗଙ୍ଗା ଡାଳେ ବିଷ୍ଣୁ ଛନ୍ତି ॥ ତୁମ୍ଭ ପତ୍ର ପଡ଼ିଲେ ଶ୍ରୀକୃଷ୍ଣ ପ୍ରୀତି
ହୋନ୍ତି । ନୋହିଲେ ଅପ୍ରୀତି ହୋନ୍ତି ଜାଣ ଏ ଭାରତୀ ॥ ମୂଳେ
ତିରଣ ଧରି ଯେ ପ୍ରଦକ୍ଷିଣ କରେ । ତାହାଙ୍କୁ ସୁଦୟା ହୋନ୍ତି
ବୃନ୍ଦାବତୀ ବାରେ ॥ ବୃନ୍ଦାବତୀଙ୍କ ମହିମା ଅଟିତ ଅଗୋଚର ।
ବୃନ୍ଦାବନେ ଅଧିକାରୀ କରି ବ୍ରଜେଶ୍ୱର ॥ ତେଣୁ ପ୍ରାତଃ ସନ୍ଧ୍ୟା
ତାଙ୍କୁ ନମସ୍କାର କର । ଆଜ୍ଞାଚକ୍ର ଭେଦ କଥା କରିବା
ବିସ୍ତାର ।୯୦। ।




ଆଜ୍ଞାସ୍ଥାଂ ଚ ଲଲାଟକଂ

**ଲଲାଟ ଚକ୍ର**

ଏବେ ଶୁଣ ଦୁଇ ଦଳ ସ୍ଥାନର ଲକ୍ଷଣ । ଚନ୍ଦ୍ର ସୂର୍ଯ୍ୟ ଗତାଗତ ହୁଅନ୍ତି ସେ ସ୍ଥାନ ॥ କାମ ବୀଜକୁ ଉଜାଣି ହଂସ ସହରୁଛି । ଆଦି ନିରଞ୍ଜନ ଦୁହେଁ କରନ୍ତି ବସତି ॥ ହଂସ ବାହନ ସେଠାରେ ଦୁଆସ୍ଥ ହୋଇଛି । ଦୁଇ ଦଳ ହଂ କ୍ଷଂ ବର୍ଣ୍ଣ ଧରି ରହିଛନ୍ତି ॥ ଲହସ୍ତ ମଧ୍ୟରେ ହଂସ ହେଉଛି ଆନନ୍ଦ । କୁମ୍ଭକ ଚନ୍ଦ୍ର ପୀରତି ଗୁରୁ ସେବ ଛନ୍ଦ ॥ ମାଣିକ୍ୟର ବର୍ଣ୍ଣ ତହିଁ କି ଦେବା ଉପମା । ବସନ୍ତ ପବନ ତହିଁ ସଦା ମନୋରମା ।୯୫। ହଂସ ପାଦୁ ବାୟୁ ଆପ ତେଜ ପୃଥ୍ୱୀ ଜାତ । ଇଅଁଳା ପିଅଁଳା ଶିଶୁମ୍ନା ତାରସୂତ୍ର ॥ ଦୁଇ ସସ୍ତ୍ର ସ୍ମରଣ ଭଜନ ଭଜେ ହଂସ । ନିତ୍ୟାନନ୍ଦ ଚଇତନ୍ୟ ପାଦରେ ସାରସ ॥ ଅଷ୍ଟ କୋଣର ମଧ୍ୟରେ ପଞ୍ଚାଶ ଅକ୍ଷର । ଗୁରୁ ବେଦ ମିଶାଇଲେ ଚଉବନ ସାର ॥ ଜୀବ ପରମ ମିଶାଇ ଛପନ ହୋଇଛି । ଠିକ ଠିକ କରି ମନ କହିଦେଲୁ ବାଛି ॥ ଷଡ଼ଚକ୍ର ଭେଦ କଥା ଶୁଣିଲୁଟି ବତ୍ସ । ଅଜ୍ଞାମ ଆଗେ କହିଲେ ମଣିବଟି ଭୁଞ୍ଜ ।୧୦୦। ମୋର ପାଦ ଛୁଇଁଥାଅ ନ କହିବୁ କାହିଁ । ସଜ୍ଜନ ଦେଖି କହିବୁ ଆନେ କହି ନୋହି ॥ ଆଧାର ଲିଙ୍ଗ ଓ ନାଭି ହୃଦ କଣ୍ଠଦେଶ । ଲଲାଟ ମିଶିଣ ଷଡ଼ ଚକ୍ରରେ ପ୍ରକାଶ ॥ ସ୍ଥୂଳ ରୂପରେ ଶ୍ରୀହରି ବିହାର କରନ୍ତି । ସୂକ୍ଷ୍ମରୂପେ ଘନଶ୍ୟାମ

ନିର୍ମଳେ ଛନ୍ତି ॥ ଶରଣ ପଶିଲେ ତୁମ୍ଭ କାରଣ ପାଇବୁ । ସୃଷ୍ଟିରୂପ
ନୟନରେ ତେବେ ନିରଖିବୁ ॥ ସୂକ୍ଷ୍ମର କାରଣ ଏବେ କରିବା ପ୍ରକାଶ
ଅନୁଭବ ଆତ୍ମରେଣ ବୁଝିବେ ପୁରୁଷ ।୧୦୫। ମନର ଘଟ ଅଟଇ
ତ୍ରିକୁଟ ମଧ୍ୟରେ । ତାର ପରେ ଅଟଇ ଯେ ଶବ୍ଦ ବ୍ରହ୍ମଘରେ ॥ ଶବ୍ଦ
ଘର ନାମ ଗୋଟି ଅଟଇ କପୋଳ । ମଧ୍ୟ ଭାଗେ ବ୍ରହ୍ମ ନାଡ଼ି କରୁଅଛି
ଖେଳ ॥ ବାମ ଭାଗେ ଚେତା ନାଡ଼ି ଉଜାଣି ଉଠିଛି । ଦକ୍ଷ ଭାଗରେ
ଅଚେତା ନାଡ଼ି ଘୋଟିଅଛି ॥ ଶବ୍ଦ ବ୍ରହ୍ମ ଉପରେଣ ଖମ୍ଭର ଘର ।
ବନ୍ଧୁ ଲକ୍ଷିତ ଅକ୍ଷର ଖମ୍ଭର ମଧ୍ୟର ॥ ତା ଉପରେ ସପ୍ତ ଦଳ ବେଷ୍ଟିତ
ହୋଇଛି । ଦକ୍ଷ ଭାଗେ ଛତ୍ରାକାର ହୋଇ ରହିଅଛି ।୧୧୦। ବାମଭାଗେ
ଚେତାକାର ପୂର୍ଣ୍ଣ ସଙ୍ଗେ ଧରି । ବ୍ରହ୍ମଇନ୍ଦ୍ର ଉପରକୁ ରହିଛି
ଆବୋରି ॥ ତିନି ଠଙ୍କା ଆଠ ଅଣା ସେଠାରେ ରହିଛି । ଅପରାଧର
ସେଠାରେ ଅଳି କରୁଅଛି ॥ ଅଳି କେଶର କୁଞ୍ଜରେ ଭ୍ରମରି ଭ୍ରମଣ ।
ପ୍ରୟେ କରି ବ୍ରହ୍ମ ନଗିରେ ଛନ୍ତି ପୂରି ॥ ସୂକ୍ଷ୍ମର କାରଣ ଏବେ
ଶୁଣିଲୁରେ ମନ । ଏଥିରୁ ଅଧିକ ନୁହେଁ ଅନୁଭବେ ଜାଣ ॥ ଶୁଣିଲୁଟି
ମନ ଷଡ଼ଚକ୍ରର ବୃତ୍ତାନ୍ତ । ମନେ ରଖିଥିବୁ ମନରେ କରି ଗୁପ୍ତ ।୧୧୫।
ନିରଞ୍ଜନ ଗାୟତ୍ରୀକି ନିରତେ ଚିନ୍ତିବୁ । (ଓଁ) ନିରଞ୍ଜନାୟ ବିଦ୍ମହେ
ରଞ୍ଜିତ କରିବୁ ॥ ପ୍ରଭାକରାୟ ଧୀମହି ତ୍ରିକାଳେ ଚିନ୍ତିବୁ । ତନ୍ନୋ
ଜ୍ୟୋତି ପ୍ରଚୋଦୟାତ୍ ନିର୍ଭେଦ ହୋଇବୁ ॥ ବେଳ ଆସି ପହଞ୍ଚିବ
ଏକ ଦିନକର । ଛନକା ନୋହିବୁ ବଳା ଦେଖି ସେ ଦୁଆରା ॥ ଛୁନଆଁ
ହୋଇଲେ ବଳା ଛନକା ପଶିବ । ଅନାମକୁ ଧରିଥିବ ଚେତି ନାମ
ନାବ ॥ ଗ୍ରୁମ୍ବାକାନ୍ତ ଅସ୍ତାଚଳେ ପ୍ରବେଶିଲେ ଯାଇ । ସନ୍ଧ୍ୟା ଆଳତିକି
ବନ୍ଦେ ଅଚ୍ୟୁତ ଗୋସାଇଁ ॥ ନବ ଜଳଧର ରୂପ ସୁନ୍ଦର ବରନ ।
କେକୀପୁଚ୍ଛ ମଣ୍ଡିଣିଯୁ କାଳୀୟ ମର୍ଦ୍ଦନ ॥ ସୁଦାମା ଦାରିଦ୍ର୍ୟ ଭଞ୍ଜକାରି
ଦାମୋଦର । ଶରଣ ରକ୍ଷଣ ହରି ତୋଳିଲା ସାଗର ॥ ନମୋଃ ଗୁରୁ
ଙ୍କୁ କୃଷ୍ଣାୟ ତବ ମୁଖ ମଧୁ । ଆଶ୍ରୟ କରିଛି ଭୁଲି ଭୃଙ୍ଗ ରସ

ସିନ୍ଧୁ ॥ ବାଉଳା ଶ୍ୟାମସୁନ୍ଦର କରଅଛୁ ଆଶ । ଶ୍ରୀପଦେ ଶ୍ୟାମ-ସୁନ୍ଦର ରଖାଅ ମାନସ ॥ ଏକଶତ ପଞ୍ଚବିଂଶ ପଦ୍ୟରେ ସମ୍ପୂର୍ଣ୍ଣ । ଶ୍ରୀ ଘର୍ଘରଙ୍କର ଶିଷ୍ୟ ହୋଇଣ କାର୍ପଣ୍ୟ ।୧୨୫।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ଶଙ୍କରାଚାର୍ଯ୍ୟାଂ ଷଡ଼ଚକ୍ର ସୂକ୍ଷ୍ମ ସମ୍ବୋଧନେ ମନ ଚୈତନ୍ୟ ସମ୍ବାଦେ ଶ୍ରୀ ସାରସୁଧା ଗୀତା ଦ୍ୱିତୀୟ ଅଧ୍ୟାୟଃ ।



## ତୃତୀୟ ଅଧ୍ୟାୟ

ନିତ୍ୟ ଆରଣ୍ୟକ ସାର ଗୁରୁ ବ୍ରହ୍ମମୂର୍ତ୍ତି । ସିଦ୍ଧ ଶୈଳ ପାହାଡ଼ରେ ବିହାର କରନ୍ତି ॥ ବାଉଳା ମନ ନମ୍ରରେ ଯୋଡ଼ ବେନିକର । ସାର-ସୁଧା ଶୁଣିବାକୁ ବଳଅଛୁ ମୋର ॥ ସଦଗୁରୁ ପୀୟୂଷ ସମ ବଚନ ପ୍ରକାଶ । ତୃତୀୟ ଅଧ୍ୟାକୁ ମୋର ବଳଅଛୁ ଆଶ ॥ ପ୍ରେମେ ପୁଲକିତ ହୋଇ ପଦ୍ମପାଦେ ପଡ଼ି । ଅନ୍ତର୍ଯ୍ୟାମୀ ନାଥ ତୁମ୍ଭେ କହ ସବୁ ଫେଡ଼ି ॥ ଷଡଚକ୍ର ବୃତ୍ତାନ୍ତକୁ ବୁଝାଇ କହିଲ । ସପ୍ତ ପଞ୍ଚାତ୍ମିକ ସଙ୍ଗେ ତତ୍ତ୍ୱ ମିଶିଥିବ ଦୟା କରି ତୁମ୍ଭେ ଦାସେ ବୁଝାଇ କହିବ ॥ ଏସନ କହି ଚରଣେ ପୁନଃ ପଡ଼ି । ଦ୍ୱାଦଶ ପ୍ରଣାମ କରି ଗଦ୍‌ଗଦରେ ରଡ଼ି ॥ ମନର ଆତୁର ଦେଖି ବିଜେ କଲେ ହରି । ବ୍ରହ୍ମସୂତ୍ରେ ବିଜେ କଲେ ଇନ୍ଦ୍ରିୟଙ୍କ ଅରି ॥

—ଚୈତନ୍ୟ ଉବାଚ—

ଶ୍ଲୋକଃ

ଭୂତ ସମୀର ମନ ତତ୍ତ୍ୱସ୍ତ ବଜକଂ !
ସ୍ୱର ଆତ୍ମା ସପ୍ତେ ଶ୍ଚୈବ ସୁବୈଷ୍ଣବ ସୁଲକ୍ଷଣଂ ।

ଆକାଶଂ ବ୍ୟାନ ଅମନଂ ଆଶ୍ରୟଂ ଶ୍ରୀ ଶ୍ରୀଵୀଜକଂ ।
ଅଂକାରଂ ପରମ ଆତ୍ମାଞ୍ଚ ଲଲାଟେନ ବସ୍ୱଜତଂ ।
ବାୟୁ ଉଦାନ କୁମନଂ ବିବେକ ଧ୍ରୁଁ ବୀଜକଂ ।
ଇକାର ପରମ ଆତ୍ମାଞ୍ଚ ଶ୍ରୁତି ମଧ୍ୟେ ବସ୍ୱଜତଂ ।
ଆପବ୍ୟାନ ସୁମନଞ୍ଚ ରୂପଞ୍ଚ କ୍ଲୀଁ ବୀଜକଂ ।
ଏକାର ଧ୍ୟାନ ଆତ୍ମାଞ୍ଚ ଦୃଷ୍ଟି ମଧ୍ୟେ ବସ୍ୱଜତଂ
ପୃଥ୍ୱୀପ୍ରାଣଂ ମନଶ୍ଚୈବ ନାମଞ୍ଚ ଶ୍ରୀ ବୀଜକଂ ।
ଉକାର ଜ୍ଞାନ ଆତ୍ମାଞ୍ଚ ନାକମଧ୍ୟେ ବସ୍ୱଜତଂ ।
ତେଜ ସମାନ ଦମନଂ ବୁଦ୍ଧିଞ୍ଚ ହ୍ରୀଁ ବୀଜକଂ ।
ଆକାର ତତ୍ତ୍ୱ ଆତ୍ମାଞ୍ଚ ମୁଖାରବିନ୍ଦେ ଶୋଭିତଂ ।
ସପ୍ତପଞ୍ଚାତ୍ମକଂ ଜ୍ଞାତ୍ୱ ଜାନାନ୍ତି ସାଧୁ ସନ୍ତତଂ ।
ଦ୍ୱାଦଶେ ସର୍ବ କାର୍ଯ୍ୟେଣ ଚକ୍ରନ୍ତଂ ସାଧୁ ସଜ୍ଜନା ॥

—ଚୈତନ୍ୟ ଉବାଚ—

ମୃଦୁ ମଧୁର ବଚନେ ଋଷନ୍ତି ଏସନ । ଶୁଣି ଆ କଥାରେ ତୋର ବନ୍ଧି ଅଛି ମନ ॥ ସପ୍ତ ପଞ୍ଚାତ୍ମିକ ସ୍ଥାନ ହୋଇ ରଖିଥିବୁ । ପ୍ରଭୁଙ୍କୁ ଅର୍ପଣ କରି ଆତ୍ମା ସମର୍ପିବୁ ।୧୦। ତେଜ ପୃଥ୍ୱୀ ଆପ ବାୟୁ ଆବର ଆକାଶ । ପଞ୍ଚଭୂତ ଯେନକରି ଏ ଦେହ ପ୍ରକାଶ ॥ ପଞ୍ଚସ୍ଥାନେ ପଞ୍ଚଭୂତ ହେଲେ ଆଚଭୂତ । ପଞ୍ଚ ସମୀର ନେଇଣ କରିବୁ ଅର୍ପିତ ॥ ସମାନ ପ୍ରାଣ ଅପାନ ଉଦାନ ବ୍ୟାନ ନେଇ । ଭକ୍ତିଭରେ ସମର୍ପିବୁ ଆରେ ମନବାଇ ॥ ଦମନ ମନ ସୁମନ କୁମନ ଅମନ । ବୁଦ୍ଧି ନାମ ରୂପ ବିବେକ ଆଶ୍ରୟ ଯେନ ।୧୫। ପଞ୍ଚବୀଜ ପଞ୍ଚସ୍ୱର ଆତ୍ମା ମଧ୍ୟେ ଭେଦ । ପଞ୍ଚଆତ୍ମା ଷଡ଼ାକ୍ଷର ମହାମନ୍ତ୍ରେ ଭେଦ ॥ ବତିଶ ଅକ୍ଷର ମନ୍ତ୍ରରାଜ ଷୋଳ ନାମ । ନନ୍ଦ ସାଧୁ କହ ମଧୁ ପାନ କାମଶ୍ୟାମ ॥ ଦାନ ଧର୍ମ ବ୍ରହ୍ମ ହୃଦଂ କଳୀ ଭଜ । ହରେ ରାମ କୃଷ୍ଣ ମଧ୍ୟେ ନିବୀଜକୁ ହେଜ ॥

—ମନ ଉବାଚ—

ପଶ୍ଚରଇ ମନ ରାଜା ଶୁଣ ଶ୍ରୀଚୈତନ୍ୟ । ମନ୍ତ୍ରୀମାନଙ୍କରେ ରାଜା କେ ଅଟେ ପ୍ରଧାନ ॥ ଏହି କାରଣ କହନ୍ତୁ କୃଷ୍ଣ ନାରାୟଣ । ସଂଶୟ ମନରୁ ଛୁଟୁ କର ହେ ଚ୍ଛିନ୍ନ ॥ ମୂକମାନଙ୍କ ମଧ୍ୟରେ ଜ୍ଞାନମାନ ହୋଇ । ପଡ଼ିଅଛୁ ରାଧାଧବ ନିରାଶ୍ରୟ ଦେଖି ॥

— ଚୈତନ୍ୟ ଉବାଚ—

କହୁଛନ୍ତି ଚଇତନ୍ୟ ଶୁଣରେ କୁମର । ଚଣ୍ଡିଆ କଥାକୁ ଉଦ୍ଧାର କରିବା ବସ୍ତାର ॥

ଶ୍ଳୋକ

କନକ ଜଳଦଗାତ୍ରୌ ନୀଳଶୋଣାବ୍ଜନେତ୍ରୌ ।
ମୃଗମଦବରଭାଲୌ ମାଳତୀ କୁନ୍ଦମାଳୌ ॥
ତରୁଣୀ ତରୁଣ ବେଶୌ ନୀଳପୀତାମ୍ବରେଶୌ ।
ସ୍ମର ନିଭୃତ ନିକୁଞ୍ଜେ ରାଧିକା କୃଷ୍ଣଚନ୍ଦ୍ରୌ ॥

ସ୍ୱର୍ଣ୍ଣ ବର୍ଣ୍ଣ ମେଘ ବର୍ଣ୍ଣ ଯାହାଙ୍କ ଶରୀର । ନୀଳରକ୍ତ ପଦ୍ମ ଯାହାଙ୍କ ନେତ୍ରଦ୍ୱର ॥ କସ୍ତୁରି ତିଳକ ଭାଲରେ କି ଦେବା ଉପମା । ଗଳାରେ ମାଳତୀ କୁନ୍ଦମାଳ ମନୋରମା ॥ ନୀଳ ବସନେ ଯୁବତୀ ଯୁବାଙ୍କ ଶରୀର । ଶୋଭାକୁ ଲେଖି ହୋଇବ ଆଶ୍ରିତଙ୍କ ନେତ୍ର ॥ ସହସ୍ର ଦଳର ଲୀଳା କରନ୍ତୁ ଆକର୍ଷ । ନିଭୃତ ନିକୁଞ୍ଜେ ସ୍ମର ଶ୍ରୀରାଧା ଶ୍ରୀକୃଷ୍ଣ ।୨୫। ସେଠାରୁ ସକଳ ଜାତ ହୋଇଣ ଅଛଇ । ମନ୍ତ୍ର ଯନ୍ତ୍ର ତନ୍ତ୍ର ଆଦ ଅଙ୍କୁରିତ ହୋଇ ॥ ମନ୍ତ୍ରରାଜ ସେହୁ ଅଟେ ଶୁଣ ଭୃଙ୍ଗ ମନ । ଭୁଲିଥିଲୁ ନିଜ ନାମ ଶ୍ରୁତିପଥେ ଶୁଣ ॥ ଗୋପୀଜନବଲ୍ଲଭାୟ ସ୍ୱାହା ସିଦ୍ଧକର । ନିବୀଜ ଓଲଟି ଭାବେ ମଧ୍ୟେ ଦଶାକ୍ଷର ॥ ମନ୍ତ୍ରମାନଙ୍କ ମଧ୍ୟରେ ରାଜା ଅଟେ ଏହି । ଏ ଅଟେ ସିଦ୍ଧାନ୍ତ ଭବ୍ୟା ନିତ୍ୟ ସାଧ ତୁହି ॥ ଯମ ନିୟମ ଆସନ ପ୍ରାଣାୟାମ କର । ପ୍ରତ୍ୟାହାର ଧାରଣାକୁ

ଜଗିବୁ କୁମରଂ ।୩୦। ସିଦ୍ଧି ରସ୍ତୁ ଓଁ ବେଦକୁ ସୁରସେ ରସିବୁ । ଋକ ଯଜୁ ଅଥର୍ବଣ ଶିଶୁରେ ମିଶିବୁ ॥ ଷ ଶ ର ଯ ଫ ର ବ ଦ ଅବନା ଏ ଆଠ । କୁଣ୍ଡଳୀ ତାରକ ଦଣ୍ଡ ଅର୍ଦ୍ଧଚନ୍ଦ୍ର ବାଣ୍ଡ ॥ ସପ୍ତପଞ୍ଚାମ୍ନଙ୍କେ ଅଷ୍ଟାକ୍ଷର ବାଣ୍ଣ ଏହି । ହରଦ ରମାଘ ଦଶାକ୍ଷାରେ ଭେଦ ଯାଇ ॥ ହସହନ୍ତୁଂ ହରେ ହର ହସଂ ହରୌ ହରଃ । ପ୍ରାଣାୟାମର କାରଣ ହେତୁ କରି ଧର ॥ ରେଚକ ଷୋହଳ ମାତ୍ର ପୂରକ ବତିଶ । କୁମ୍ଭକ ଚୌଷଠି ରଖି ସଞ୍ଜମରେ ରସ ।୩୫। ଛାୟାଃବାଡ଼ ଜ୍ୟୋତି ଅନାହତ ଅକଳିତ । ପଞ୍ଚ ସଖାତାଟି ଏହି ଚେତାରଖ ନିତ୍ୟ ॥ ବଳଦ ବନ୍ତ ଯଶୋବନ୍ତ ଅନନ୍ତ ଅଚ୍ୟୁତ । ଜଗନ୍ନାଥ ପଞ୍ଚସଖା ଯୁଗେ ଯୁଗେ ଖ୍ୟାତ ॥ ପଞ୍ଚଇନ୍ଦ୍ରିୟର ନାମ କହିବା ପ୍ରକାଶ । ରସ ଗନ୍ଧ ରୂପ ଶବ୍ଦ ସ୍ପର୍ଶକୁ ରସ ॥ ପରରମା ଜାମ ଧାମ ପରମ ବୋଲାଇ । ବାଜର ନାମଟି ଏହି ଚଉଦ ଅଛୁ ଧାଇ ॥ ବଳଭଦ୍ର ସୁଭଦ୍ରା କା ସଙ୍ଗେ ଜଗନ୍ନାଥ । ସୁଦର୍ଶନ ସିଂହାସନ ନୀଳଶୈଳ ଧାମ ।୪୦। ପଞ୍ଚଦେବ ନୀଳଶୈଳେ ରହି ବିହରନ୍ତି । ବୌଦ୍ଧରୂପୀ ହୋଇ ପ୍ରଭୁ ଝଲେକ ବ୍ରହ୍ମାଣ୍ଡ ॥ ପଞ୍ଚ ସମ୍ପ୍ରଦାର କଥା ଶୁଣ ଆରେ ସୁତ । କହିବା ପ୍ରଛିନ୍ନ କରି କର ଶ୍ରୁତିପାତ ॥ ବିଷ୍ଣୁ ସ୍ୱାମୀ ମାଧବାଚାର୍ଯ୍ୟାଦ ରାମାନନ୍ଦ । ଶ୍ୟାମାନନ୍ଦ ଅବଧୂତ ଜ୍ଞାନ ଘରେ ଛନ୍ଦ ॥ ପଞ୍ଚଗୁରୁ ପଞ୍ଚ ତୀର୍ଥ ଆଉ ବଟ ପଞ୍ଚ । ପଞ୍ଚ ବର୍ଣ୍ଣ ପଞ୍ଚ ଦିଗ ମୃଗ ହାଟ ଘଞ୍ଚ ॥ ବିଦ୍ୟା ଗୁରୁ ମାତା ଗୁରୁ ପିତା ଗୁରୁ ତିନ । କର୍ଣ୍ଣ ଗୁରୁ ତତ୍ତ୍ୱ ଗୁରୁ ପଞ୍ଚ ଗୁରୁ ବାଣୀ।୪୫। ଗୁରୁଙ୍କୁ ଅବଜ୍ଞା କେବେ ନ କରିବୁ ମନ । ଗୁରୁ ବାକ୍ୟ ମାନି ଭକ୍ତି କରିବୁ ସଞ୍ଜମ ॥ ଗୁରୁ କୃଷ୍ଣ ବଇଷ୍ଣବ ଏକଇ ସ୍ୱରୂପ । ଏ ତିନ ଏକ ଅଟନ୍ତି କରି ଭୁ ବିବେକ ॥ ବଂଶୀବଟ ବାଂଛାବଟ ଉଦୟାଦି ବଟ । ଅକ୍ଷୟବଟ କଳ୍ପବଟ ॥ ସତ ଶାନ୍ତ ଦୟା କ୍ଷମା ଧର୍ମ ଆଦି ସାଧ । ଉର୍ମି ଧର୍ମ ଜ୍ୟୋତି ଜ୍ୱାଳା କଳା ପଞ୍ଚ ସିଦ୍ଧ ॥ ନରେନ୍ଦ୍ର ଇନ୍ଦ୍ରଦ୍ୟୁମନ

ଶ୍ୱେତଗଙ୍ଗା ଆଦି । ମାର୍କଣ୍ଡ ସାଗର ପଞ୍ଚତୀର୍ଥରେ ପ୍ରସିଦ୍ଧି ।୫୯। ଶ୍ୱେତ ଦ୍ୱାରଦ୍ର ପୀତ ଲୋହିତ କୃଷ୍ଣବର୍ଣ୍ଣ । ଉତ୍ତର ପୂର୍ବ ଦକ୍ଷିଣ ପଶ୍ଚିମ ଓ ଶୂନ୍ୟ ॥ ରସଦ୍ୱାଟ ନାମଦ୍ୱାଟ ରୂପଦ୍ୱାଟ ତିନ । ଗୋଲଦ୍ୱାଟ ଘରଦ୍ୱାଟ ପଞ୍ଚଦ୍ୱାଟ ଘେନ ॥ ଯମପ୍ରସ୍ଥ ଇନ୍ଦ୍ରପ୍ରସ୍ଥ ଜୟନ୍ତ ବାରୁଣା । ହସ୍ତିନା ପଞ୍ଚ-କଟକ ପାଣ୍ଡବଙ୍କ ଠଣା ॥ ଯୁଧିଷ୍ଠିର ଭୀମାର୍ଜୁନ ନକୁଳ ଯେ ପୁଣ । ସହଦେବ ମିଶି ପଞ୍ଚ କଟକେ ରାଜନ ॥ ରସ ଗନ୍ଧ ରୂପ ଶବ୍ଦ ସ୍ପର୍ଶ ଘରେ ଖୋଜ । ଜ୍ଞାନେନ୍ଦ୍ରିୟ ବୃନ୍ଦେ ଲୀଳା କରେ ବ୍ରଜରାଜ ॥ ସପ୍ତ ପଞ୍ଚାମୃତିକ ରସ ଷ୍ଟୁଣିଲୁରେ ମନ । ସଦଗୁରୁ ପାଇଥିଲେ ଘଟଇ ଏମାନ ॥ ପ୍ରତି ପ୍ରତି କହିଲଇଁ ଚେତନେ ଚେତାଅ । ଆଉ କେତେକ କହିବେ ଅଗାଡ଼ିଟି ପୁଅ ॥ କହନ୍ତି ଚୈତନ୍ୟ ଦେବ ବିଷ୍ଣୁପ୍ରିୟା କାନ୍ତ । ଏ ଅଟେ ଗୂଢ଼ ରହସ୍ୟ ସତ୍‌ସଙ୍ଗେ ବ୍ୟକତ ॥ ଶ୍ରୀଚୈତନ୍ୟ ଗୀର ଶୁଣି ଚାଉଳାର ମନ । ଆନନ୍ଦେ ଅଶ୍ରୁନୟନୁ ବହିଲକ ବନ ॥

—ମନ ଉବାଚ—

ନମସ୍ତେ ଶ୍ରୀଚଇତନ୍ୟ ଯୋଗାଧି ପୁରୁଷ । ଯୋଗରୁ ହିଁ ବ୍ୟତିରିକ୍ତ ନିର୍ଲିପ୍ତ ରମେଶ ।୬୦। ନମୋଃ ଶ୍ରୀରାମ ଗୁରୁ ପରମ ଅନ୍ତର୍ଯ୍ୟାମୀ । ସଚରାଚର ଘଟରେ ସ୍ଥିତ କମ୍ମୁପ୍ରାଣି ॥ ନମସ୍ତେ ଶ୍ରୀରାମ ଗୁରୁ ସର୍ବ-ଘରେ ବସା । ନମସ୍ତେ ଶ୍ରୀଗୁରୁ ରାମ ବ୍ରହ୍ମସ୍ୱକ୍ଷେରସା ॥ ନମସ୍ତେ ଶ୍ରୀରାମ ଗୁରୁ ସର୍ବଘଟେ ସାର । ନମସ୍ତେ ଶୀରାମ ଗୁରୁ ବ୍ରହ୍ମା ବିଷ୍ଣୁ ହର ॥ ନମସ୍ତେ ଶ୍ରୀରାମ ଚଇତନ୍ୟ କଳ୍ପତରୁ । ଅଜ୍ଞାନାନ୍ଧ ନାଶକର ଆଦେ ମହାମେରୁ ॥ ନମସ୍ତେ ନମସ୍ତେ ରାମ ଅନାଦି ପୁରୁଷ । ନମସ୍ତେ ନମସ୍ତେ ରାମ ଆକାର ସ୍ୱରୂପ ।୬୧। ନମସ୍ତେ ନମସ୍ତେ ରାମ ଭକ୍ତ-ହିତକାରୀ । ନମୋଃ ନମସ୍ତେ ଶ୍ରୀରାମ ଜୀବ ହିତକାରୀ ॥ ନମସ୍ତେ

ନମସ୍ତେ ରାମ ଶ୍ବେତ ପଦ୍ମ ଡୋଳା । ଭଗତ ହିତ ନମସ୍ତେ ବାନ୍ଧଅଛ ଭେଳା ॥ ଅନନ୍ତ ଅବତାରଣ କେ କରିବ ଅନ୍ତ । ବାଉଳ ଅନ୍ଧ ହୋଇଣ ପଡ଼ିଛୁ ବନସ୍ତ ॥ ପଥ ନ ଦିଶଇ ପ୍ରଭୁ ଦିଅ ଚକ୍ଷୁଦାନ । ଅନ୍ଧର ଲଉଡ଼ି ପ୍ରଭୁ ଆହେ ଚଇତନ୍ୟ ॥ ମୋହର ମନରେ ଧରି ଅଛଇ ଯେ ତତେ । ତୁ କମ୍ପା ପାଶୋରି ଦେଉ ମୁଁ କି ପାଶୋରିବ । ତୋହର ପାଦରେ ମନ ଅର୍ପଣ କରିବ ॥ ଅକର୍ମ କର୍ମ ଦାୟକ ଗୁଣ ଅବଗୁଣ । ହେ ନାଥ ତୋହର ସଙ୍ଗ ଅଟଇ ଦିଆଣ ॥ କୀଟ ବ୍ରହ୍ମ ପରିଯନ୍ତେ ଚଉଦ ଭୁବନେ । ତୁହି ନ ଜାଣିବା କଥା କେ ଜାଣିବ ଆନେ ॥ ତୁ ଯେବେ ମାୟା କରିବୁ ରଖିବା କେ ନାହିଁ । କରୁଣା ବହିଲେ ତହିଁ ଶନ୍ୟାମୋର ନାହିଁ ॥ ଦୟାମାୟା ମନ୍ତ୍ର ଜାଣୁ ହେ ପରାଣବନ୍ଧୁ । ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନେ ବାନ୍ଧୁ ।୬୫। ମାରଣ ବିଦ୍ବେଷଣ ଯେ ଏହି ଛଅ ଆନ୍ଧ । ପୂର୍ଣ୍ଣମାସୀ କହିଥିଲେ ଏହାର ପ୍ରସିଦ୍ଧି ॥ ସକଳ ଘଟରେ ରହି ସାକ୍ଷୀ ରୂପେ ଥାଉ । କିଛି ନ ଜାଣିଲି ପରି ଜଡ଼ମତେ ରହୁ ॥ ତାର ଅବା ମାର ପ୍ରଭୁ ନାହିଁ ମୋ ଭାବନା । ଘଟ ଗାଣ୍ଠି ହେଲେ ହେବନାହିଁ କଳପଣା ॥ ନୂତନ ବସନ ଯେବେ ପୁରାତନ ହୋଇ । ପୁନର୍ବାର ନୂତନ ବସ୍ତ୍ରକୁ ଇଚ୍ଛାଥାଇ ॥ ତୋହର ନୂତନ ବସ୍ତ୍ର ଇଚ୍ଛା ଅଛି ଯେବେ । ପୁରାତନ ବସନେ କି ପ୍ରୟୋଜନ ତେବେ । ତୋହର ଆନନ୍ଦ ଯେବେ ନାହିଁ ରାଧାକାନ୍ତ । କି ହେବ ଏ ଘଟ ରହି ମନର ଅଶାନ୍ତ ॥ ମନ ଯେବେ ଶାନ୍ତ ନାହିଁ ତୋ ଆନନ୍ଦ ନାହିଁ । ତୋହର ଆନନ୍ଦେ ସିନା ମହାନନ୍ଦ ହୋଇ ॥ ସୁବର୍ଣ୍ଣ ନନ୍ଦ ହୋଇଣ କହ ନାଥ ମତେ । ଅଥୟ ସ୍ରୋତରେ ପଡ଼ି ଭାସୁଛି ନିରତେ ॥ ଦରଶିଣ ଅଣ୍ଡାଳଇ ହସ୍ତ ପାଉ ନାହିଁ । ହସ୍ତକୁ ଉହାଡ଼ି ରଖ ପଶାଖେଳ ପାଇଁ । ସପ୍ତାଙ୍ଗ ଯୋଗ କାରଣ ବୁଝାଇ

ଢିଅଛନ୍ତି । ଏ ଦେହ ଅଜର ଅମରରେ ଲିପ୍ତ ଥାନ୍ତି ।୮୫। ଯୋଗ-
ମାନଙ୍କରେ ସାର ଜ୍ଞାନଯୋଗ ବୋଲି । କହିଥିଲ ଚଇତନ୍ୟ ମନ୍ତ୍ର
ନାହିଁ ଭୁଲି ॥ ବିସ୍ତୀର୍ଣ୍ଣ ଭାବରେ ତାହା କରନ୍ତୁ ପ୍ରକାଶ । ସାର
ଉପଦେଶ ଦେଇ ତୋ ଦାସକୁ ତୋଷ ॥ ଜୀବ ପରମର ଖେଳ କପଟ
ଲଗିଛି । ଏ ଘଟେ ଜୀବ ବିଶ୍ରାମ କପଟ କରିଛି । ॥ ଶ୍ରୀରାଧା କୃଷ୍ଣଙ୍କ
କର୍ମ ହୁଅଇ ଅଭେଦ । ପ୍ରକୃତି ନ ଛାଡ଼ି ଜୀବ ପାଇଛି ସଙ୍କଟ ॥ ଏ
ଅଙ୍ଗକୁ ଦେଲେ ନେଇ ସେ ଅଙ୍ଗ ପାଇବ । ଏହା ମୋତେ ବୁଝାଇ
କହ ହେ ରାଧାଧବ ।୯୦। ଦିବାରାତ୍ର କ ରୂପରେ ହେଉଥାଏ ଖେଳ ।
ଏହା ବୁଝାଇ ସୁଶାନ୍ତ କର ଆତ୍ମମୂଳ । ଦିବସ ସନ୍ଧ୍ୟା ରଜନୀ ପ୍ରାତଃ
କେଉଁ ଅଟେ । ଏ ଭାବ ଜାଣିଲେ ଯମ ଦାସକୁ ନ କାଟେ । ଅଚେତନ
ପିଣ୍ଡକୁ ଚେତନ କରାଇବ । ସ୍ଥୂଳ ସୂକ୍ଷ୍ମ କାରଣକୁ କପଟ ଛାଡ଼ିବ ।
କାଳକର୍ମ ଜାଣି ବାୟୁ କପଟ ଟେକିବ । ତ୍ରିତାପ ଜଞ୍ଜାଳ ଘଟ
ବାହୁଡ଼ାଇ ଦେବ ॥ ଘଟ ସରୋବରେ ହଂସ କପଟ ଖେଳୁଛି । ମନ
ଭୃଙ୍ଗ ଚୁମ୍ବିବ ସାତବାର ବାଛି ॥ ସାତବାର ରହସ୍ୟକୁ ବୁଝାଇ
କହିବ । ଚନ୍ଦ୍ର ସୂର୍ଯ୍ୟ ସାତବାର ଗତାଗତ ହେବ ॥ ଚନ୍ଦ୍ର ସୂର୍ଯ୍ୟ ସାତ
ବାର କପଟ ମିଶିଲେ । ନନ୍ଦଅ। ବହାରି ହରି କହ ଦୟା ଥିଲେ ।
ତୋହର ଦୟା ଅଛଇ ଯେବେ ନନ୍ଦନାନ । ଭଗତ କଣି ଅଛଇ
ଦେଇ ମନ ଧନ ॥ କଣାଜନ ହୋଇଅଛୁ ଭକତ ଭାବରେ । ଦରିଦ୍ରର
ଗଣ୍ଠି ଧନ ଦୟାକର ବାରେ ॥ ମୁଁ ଅଟେ ଅଜ୍ଞାନୀ ନାଥ ଅଧମ
ପାମର । ଅଧମ ନିସ୍ତର ବାନା ଉଡ଼ୁଛି ତୁମ୍ଭର ।୧୦୦। ଧନ ରୂପ
ଜ୍ଞାନ ହଜାଇଣ ହେଲି ହୋଳ । ଦରିଦ୍ରର ଧନ ତୁ ମୋ ଅଟୁ ଗଳା-
ମାଳ ॥ ମୁଁ ଅଟେ ଦରିଦ୍ର ପ୍ରଭୁ ତୁ ମୋ ଅଟୁ ଧନ । ନିର୍ଧନୀ ଧନୀ
ହେଲେ ଆନେ କ ପ୍ରୟୋଜନ ॥ ଅପୁତ୍ରିକ ପୁତ୍ର ଯଦି ପାଏ ମହା
ବାହୁ । ଆନନ୍ଦର ସୀମା ତାର କେ କହିବ ଆଉ ॥ ଯେସନେ ଅନ୍ଧକୁ

ତଷ୍ଟ ପ୍ରାପତ ହୁଅଇ । ତାହାର ସାନନ୍ଦ ଭାବ କହି ନ ହୁଅଇ॥ ତୋର ଧନ ଭୁଞ୍ଜି ଯଦ୍ଦ ନ ହମ୍ଭାକୁ ନାଥ । ତସ୍କର ସୂତ୍ରଣ ନେବେ ହୋଇବ ଅନର୍ଥ ।୧୦୫। ଯାହା କରପାରୁ ତାହା ଆହେ ମାୟାଧର । ଜର କରାଇଣ ଖେଳ ଖେଳୁ ବଂଶୀଧର ॥ ମନ ଭ୍ରମର ଚହ୍ନରେ ଘୂରୁହେଉ ଅଛି । ସପ୍ତାଙ୍ଗ ମାର୍ଗ ଶୁଣିବା ମନ ବଳାଉଛି ॥ ଭେଦାଇ କହନ୍ତୁ ନାଥ ହଂସାହଂସ କଥା । ଲୁଗୁଇଲେ କି ଲୁଚିବ ଆହେ ତଷ୍ଟ ଦାତା ॥

—ଚୈତନ୍ୟ ଉବାଚ—

ଶୁଣ ମନ ନୃପ ଇନ୍ଦ୍ର ସପତାଙ୍ଗ ଯୋଗ । ଯାହା ପୁଚ୍ଛା କଲୁ ମନ ସାତ ବାର ମାର୍ଗ ॥ ପଞ୍ଚଭୂତ ଚନ୍ଦ୍ର ସୂର୍ଯ୍ୟ ଜାଣିଛନ୍ତି ଏହା । ଆନ କେହୁ ନ ଜାଣନ୍ତି କହୁଛି ମୁଁ ତାହା ।୧୧୦। ସାତବାର ଚନ୍ଦ୍ର ସୂର୍ଯ୍ୟ ତୋର ଘରେ ଛନ୍ତି । ଅଧିଦୈବତେ ଚେତିବୁ ଗୁଡ଼ ମନୁ ଭ୍ରାନ୍ତି ॥ ଜଳର ଭିତରେ ପବନର ଅଟେ ଘର । ବିଷୟ ଜଡ଼ିତ ବୋଲି ନ କରିବୁ ଦୂର ॥ ଜଳ ପ୍ରକୃତିକି ଯେନ ସେ ବାୟୁ ପୁରୁଷ । ପୁରୁଷ ବିଯୋଗେ ମନ ପ୍ରକୃତି ଯେ ନାଶ ॥ ପବନର ଯନ୍ତ୍ରରେ ଯନ୍ତ୍ରିତ କଳେବର । ଏ ପିଣ୍ଡ ଅଟଇ ମନ ପବନର ଘର ॥ ଯନ୍ତ୍ର ସାର ହୋଇ ମନପବନ ରହିଛି । ଦଶ ପରକାରେ ବାୟୁ ବିହାର କରୁଛି ।୧୧୫ ତିନଶ ବାସ୍ତରି ନାଡ଼ି ପ୍ରକୃତି ମଧ୍ୟର । ତହିଁରୁ ଅଲଗ ଅଟେ ଦଶ ନାଡ଼ିଆର ॥ ସେ ଦଶନାଡ଼ିରେ ଅଛି ଦଶ ସମୀରଣ । ତହିଁରୁ ସାର ବାଛିଣ କହିବାକି ଶୁଣ ॥ ସେ ଦଶ ନାଡ଼ି ନିବିଧେ ସଂଚରଣ କଲି । ପରମ ଗୁମ୍ଫା ମଧ୍ୟରେ ଯାଇଣ ପଶିଲି । ଜୀବର ବିକଳ ଯାଣି ହୋଇଲି ଘଟରେ । ସଙ୍ଗ ଦେହେ ଅଛନ୍ତି ସେ ତୃଷାୟୁ ଭାବରେ ॥ ହଂସ ସୁହଂସ ଦୁଇ ପରମ ହଂସ ତିନ । ନିତ୍ୟାନନ୍ଦ ସ୍ୱରୂପ ସେ ଜୀବତତ୍ତ୍ୱ ଯେନ।୧୨୦ ଶୁଣ ତୁ ବାଉଳି କର୍ଣ୍ଣ ଘରେ ଚିତ୍ତ ଥୋଇ । ମନ ସୁମନ ଯେନ ହେଜରେ ଥିବୁ ଧ୍ୟାଇ ॥ ନିର୍ଗୁଣ ହଂସର ଯୋଗ ମହିମା ତୁ ଶୁଣ ।

ହସ୍ତ ଦଳ ଭେଦ କହୁବାଟି ସୁଚତେଣ ॥ ଆଦ୍ୟରେ ପରମ ହଂସ
ଶୂନ୍ୟରେ ଜନ୍ମିଲା । ବିନ୍ଦୁ ଆକାର ହୋଇଣ ଓଁକାର ହୋଇଲା ॥
ହସ୍ତ ହଂସରେ ଜଗତ କ୍ଷରାକ୍ଷର ହେଲା । ଅଣାକ୍ଷର ଏକାକ୍ଷର ଓଁକାର
କ୍ଷରିଲା । ତାହାଣୁ ଜନ୍ମିଲା ଜୀବ ତାର ନାମ ହଂସ । ବାମ ଭାଗରୁ
କ୍ଷରିଲା ତା ନାମ ସୁହଂସ ।୧୨୫। ପରମ ହଂସ ଜୀଳକ ହୋଇଣ
ରହିଲା । ବାରବାର ଖେଳା ଲୀଳା ସୃଷ୍ଟିରେ ରହିଲା ॥ ସ୍ୱପନ ଜାଗ୍ରତ
ନିଦ୍ରା ଏ ତିନଙ୍କ ଧରି । ଘଟକୁ ଆବୋରିଛନ୍ତି ଢବା ନଶି ଘେର ॥
ଜାଗ୍ରତର ଅବସ୍ଥାକୁ ଧରିଥାଇ ହଂସ । ନିଦ୍ରା ଅବସ୍ଥାକୁ ଜଗି ରହଇ
ସୁହଂସ ॥ ପରମ ହଂସ ଧରଇ ସ୍ୱପନ ବ୍ୟବସ୍ଥା । ଏପରି ହଂସ
କାହାଣୀ ବୁଝ ଆରେ ପୁତା ॥ ଗତାଗତ କରୁଛନ୍ତି ପ୍ରକୃତିକ ଯେଣ !
ସ୍ୱପ୍ନ ଜାଗ୍ରତ ସୁଷୁପ୍ତି ଏ ଅବସ୍ଥା ତିନ ।୧୩୦। କେବଳ ଏ ଯୋଗ
ଲେଖି ଜାଣନ୍ତି ଶଙ୍କର । ଏ ଯୋଗକୁ ଜାଗି ହର ହୋଇଲେ ଅମର ॥
ଶୁଣିଲୁ ମନ ରାଜା ତୃତୀୟ ଅଧ୍ୟା କଥା । ବେଳ କାଳ ଆସିଲେ ଭୁ
କରିବୁ ବକତା ॥ ସପତାଙ୍ଗ ଯୋଗରିତି ଏପରି କାହାଣୀ । ସାତ
ସୁ ରୁଷ ତୋହର ତରିଯିବେ ଶୁଣି ॥ ଏକଣ ଚୌତିଶ ପଦେ ହେଲା
ସମାପତ । ଶ୍ୟାମସୁନ୍ଦର ହଂସକୁ କରୁଛି ଜାଗ୍ରତ ।୧୩୪।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ସପ୍ତାଙ୍ଗ ଯୋଗ
ମନ ଚୈତନ ସମ୍ବାଦେ । ସାରସୁଧା ଗୀତା କଥନେ
ନାମ ତୃତୀୟ ଅଧ୍ୟାୟଃ ।

—*—

## ଚତୁର୍ଥ ଅଧ୍ୟାୟ

—ମନ ଉବାଚ—

ପଚାରଇ ମନ ରାଜା ସପ୍ତାଙ୍ଗ କାରଣ । ଚତୁର୍ଥ ଅଧ୍ୟା ଶୁଣନ୍ତୁ
ରାଜୀବ ଲୋଚନ ॥ ବେଳକାଳ ଜାଣିଣ କରିଉଥିବ ଲକ୍ଷ । ସୁଦକ୍ଷ

କର ଶରଣ ନ ରଖି ସନ୍ଦେହ ॥ ପ୍ରେମାନନ୍ଦ ଶରଣଙ୍କ ଅଚଳ କୃପାରୁ । ଲେଖିଅଛି ସାରସୁଧା କଲ୍ଲୋଳ ମଧ୍ୟରୁ ॥ କୃଷ୍ଣ ମନ୍ତ୍ର ଯେତେବେଳେ ପ୍ରଦାନ କରିଲେ । ମୋହର ନୟନ ଅଗ୍ରେ ଲୁଚି ସେ ରହିଲେ ॥ ତେଣୁ କରି କୃଷ୍ଣ ରସ କିଛି ମୁଁ ପାଇଲି । ଭାବନାରେ ମୋ ନୟନେ ହସନ୍ତ ଦିଶିଲ ।୭। ମୋ ହୃଦେ ବସି କହୁଛି କୃଷ୍ଣ ଗୁଣ ଗାଇ । ସେ ଧନ୍ୟ ଶ୍ରୀକୃଷ୍ଣ ଲୀଳା ମୋ ହୃଦେ ଧାରଇ ॥ ସପତାଙ୍ଗ ଯୋଗର ଏ ସାରସୁଧା ରସ । ଶୁଣିବାକୁ ଇଚ୍ଛା ପ୍ରଭୁ ହେଉଛି ମାନସ ॥ ଭକ୍ତ ଭଗବାନ ଦୁହେଁ ନୁହନ୍ତିଟି ଭିନ୍ନ । ଅଭିନ୍ନ ଘନ ମୂର୍ତ୍ତିରେ ବଳାଇଛି ମନ ॥ ମୋଠାରେ ଯେବେ ସୁଦୟା ବହିଲ ଚୈତନ୍ୟ । ଗତ ମୁକ୍ତି ଦାୟକ ଭଗତ ଉଦ୍ଧାରଣ ॥ ଧର୍ମ ଅର୍ଥ କାମ ମୋକ୍ଷେ ନାହିଁ ପ୍ରୟୋଜନ । ସଦା ସେବା କରୁଥିବ ଶ୍ରୀରଙ୍ଗା ଚରଣ ।୧୦।

—ଚୈତନ୍ୟ ଉବାଚ—

ଶୁଣ ମନ ଆନନ୍ଦରେ ମନ କରି ଥୟ । ମନ ସୁମନ ସ୍ୱରୂପରେ କରୁଥିବ ଲୟ ॥ ଅନାଦି କାଳେ ଅନାଦି ଆଦ୍ୟ କ କହିଲେ । ଅନାଦି କାଳୁ ଏ ଯୋଗ ବ୍ୟାପିଛି ଶୟନେ ॥ ଅନାଦିଙ୍କଠାରୁ ରୁଦ୍ର ଶିକ୍ଷା ଲଭିଲେ । କନ୍ଦର୍ପକୁ ଦହନ କରି ଭସ୍ମ ବୋଲାଇଲେ ॥ କାଳମୃତ୍ୟୁ ଜିଣିବାରୁ ମୃତ୍ୟୁଞ୍ଜୟ ନାମ । ସ୍ୱଦେହ ବେଧନେ ଶିବ ଗମନ ଅଗମ୍ୟ ॥

—ମନ ଉବାଚ—

ଚୈତନ୍ୟ ଚନ୍ଦ୍ରଙ୍କୁ ଭୁଲି ମନ ପଶୁରଇ । ଏ ଘଟ ରହିବା ମାର୍ଗ କହନ୍ତୁ ବତାଇ ।୧୫। ଇଚ୍ଛା ମରଣ କାରଣ ଯୋଗୀଏ ଜାଣନ୍ତି । ଇଚ୍ଛା ଜନମ ହୋଇ ସଚେତ ରହିଥାନ୍ତି । ନମ ପ୍ରାଣନାଥ ଦେହାତ୍ମାର ମୃତ୍ୟୁଭେଦ । ସପ୍ତାଙ୍ଗ ଯୋଗ କହିଣ ସଂଶୟକୁ ଛେଦ ॥ ଜୀବ ପରମ ସ୍ନେହେ କରଅ ଅନୁଭବ । ନୋହିଲେ ସ୍ୱର୍ଲୋକେ ଚୋର

ବୁଡ଼ିବ ଯେ ନାବ ॥ ତୋର ନାବ ଭୁହିଁ ନ ରଖିଲେ ହସିଯିବ । ପତିତପାବନ ବାନା ଆଜ ନ ଉଡ଼ିବ ॥ ହେ ନାଥ ନାବରେ ଯନ୍ଧ କାର୍ଯ୍ୟ ନାହିଁ କଛି । ସମୁଦ୍ରେ ଭସାଇ ଦ୍ୟନ୍ତୁ ଆହେ ନନ୍ଦବଛି ।୨୦।

—ଚୈତନ୍ୟ ଉବାଚ—

ଶୁଣ ତୁ ଅବୋଧ ମନ ପୁଚ୍ଛିବା କାରଣ ।ପ୍ରଚଣ୍ଡ ନାମେଣ ଥିଲ ଏକ ପକ୍ଷୀ ଜାଣ ॥ ତାହାର ପୁତ୍ର ଭୁଷଣ୍ଡ କାକ ଅଟେ ମନ । ଭୁଷଣ୍ଡ କାକର ଶିଷ୍ୟ ଲୋମାଷ୍ଟି ଜାଣ । ଲୋମାଷ୍ଟ ଋଷି ସ୍ବ ଦେହେ ଅମର ହୋଇଛି । କୋଟିଏ ଯୁଗ ଗଲଣି ଷୋଭ ନାହିଁ କଛି ॥ ବଶିଷ୍ଠ ନାମେଣ ଋଷି ରଘୁବଂଶେ ଜାଣ । ସେ ପୁଣି ପାଇଲେ ଜ୍ଞାନ ଭୁଷଣ୍ଡ ମୁଖେଣ ॥ ସେ ଯୋଗ ପାଇ ବଶିଷ୍ଠ ଶିଷ୍ଯ ବୋଲଇଲେ । ଶ୍ରୀରାମଚନ୍ଦ୍ରଙ୍କୁ ଯୋଗ ବୁଝାଇ କହିଲେ ।୨୫। ଶିଷ୍ୟ ହେବେ ରାମ ତାଙ୍କ ପଚାରିଲେ ତତ୍ବ । ପ୍ରସନ୍ନେଣ ବ୍ରହ୍ମଋଷି କହିଲେକ ତତ୍ବ ॥ ଅଞ୍ଜନେୟ ବୀର ଅଟେ ଶ୍ରୀରାମଙ୍କ ଦୂତ । ବ୍ରହ୍ମଜ୍ଞାନ କହିଥିଲେ ଜାନକୀଙ୍କ କାନ୍ତ ॥ପୁଣି ହନୁମାନ ଜ୍ଞାନ ସାଗର ଭଣ୍ଡାର । ଯୁଗେ ଯୁଗେ ରହିଣ ଧରିଛି କଳେବର ॥ ଶୁଣ ମନ ଭଜନ ଚେତାରେ ଯେବେ ଥିବୁ । ଜୀବ ପରମ ଚନ୍ଦ୍ର ସୂର୍ଯ୍ୟଙ୍କୁ ଜଗିଥିବୁ॥ ଚନ୍ଦ୍ର ସୂର୍ଯ୍ୟ ଯୋଗ ଅଟେ ଯୋଗରେ ପ୍ରସିଦ୍ଧ । ସୁଜ୍ଞାମାନେ ଜାଣନ୍ତି ମନ ମୂର୍ଖ ଭେଦ ।୩୪। ପ୍ରଣବ ହଂସ ଯେ ଚନ୍ଦ୍ର ବାମ ନାଡ଼ କହି ।ସୂର୍ଯ୍ୟ ନାଡ଼ି ଅଟେ ସୋହଂ ବହାର କରଇ॥ ସାତ ବାର ହୋଇ ଚନ୍ଦ୍ର ସୂର୍ଯ୍ୟ ବହରଇ । ଏକାଙ୍ଗ ଭଜନ ଗୋଟି ସୁଜ୍ଞାନ ଜାଣଇ ॥ ଇଅଁଳା ପିଅଁଳା ଶିଶୁମୁନା ନାଡ଼ି ତିନ । ଉଦୟ ହେଉ-ଅଛନ୍ତି ସାତବାର ଘେନ ॥ ପିଙ୍ଗଳ ଉଦୟେ ସୋହଂ ରବରେ ଚେତିବୁ । ଇଅଁଳାରେ ହଂସ ନେଇ ସୋମଶିଖେ ଦେବୁ ॥ ଇଡା ପିଙ୍ଗଳା ମିଶି ବହିବ ଯେତେବେଳେ । ଓଁକାର ବସିଷ୍ଠ ରୂପ ଧ୍ୟାଇବୁ ସେକାଳେ ।

ତ୍ରିକାଳେ ତ୍ରିଭଙ୍ଗୀ ଧ୍ୟାନ ଯୋଗୀ ଜାଣିକର । ଭକ୍ତ ସ୍ୱଭାବରେ ହରି ଲୀଳାରେ ଥାନ୍ତି ପୂରି ॥ ଷୋଡ଼ଶବାର ଜଗିଣ ତୁ ତପନ ଭେଟିବୁ । ତିନବାର ଚେତା ଥୋଇ ନାଶାରେ ଜଗିବୁ ॥ ଏ ଦୁହେଁ ସଙ୍ଗମେ ମନ ଶିଶୁମ୍ନାରେ ଭେଟ । ସଞ୍ଜମ ସ୍ପର୍ଶକର ତ୍ରିକୂଟ ଚନ୍ଦ୍ରଘାଟ ॥ ତାହାର ମଧ୍ୟରେ ମନ ବ୍ରହ୍ମରନ୍ଧ୍ର ଦ୍ୱାର । ତାଳ ଯେପରି ପ୍ରାୟେକ କବାଟ ସେ ଠାବର । ଶତଦଳ ସାଜପୁରେ ଚେତା ରଖିଥିବୁ । ନାଭିର ପବନ ନେଇ ନାସାରେ ରଖିବୁ ।୪୦। ଶତଦଳ ଠାବରେ କାଳକୁ ବନ୍ଦୀ କର । ବ୍ରହ୍ମ କବାଟ ଫିଟାଇ ବ୍ୟାନ ବାୟୁଧର ॥ ସେହିଠାରେଣ ଜୀବକୁ କାଳ ଖାଉଅଛି । ଚେତିଲେ କାଳ ଘୂଞ୍ଚିବ କହି ଦେଲୁ ବାଛି ॥ ଧରିଲେ କାଳର ହାସ ନ ଲଗିବ ମନ । ଆତ୍ମା ନେଇ ମିଶାଅ ଅନାଦି ନିରଞ୍ଜନ ॥ ଲୁହାର ଶିକୁଳ ପ୍ରାୟେ ହୋଇଅଛି ଛନ୍ଦ । ଛନ୍ଦ ଛନ୍ଦ ପାରିଲେ କାଳକୁ ଦେବୁ ବାନ୍ଧି । ବ୍ରହ୍ମ ସମାଧି କ ଧରି ବ୍ରହ୍ମଅଗ୍ନି ଜାଳ । ବ୍ରହ୍ମ ଅଗ୍ନି ତେଜରେ ଦାହନ ହେଉ କାଳ ।୪୫। କାଳଅଗ୍ନି ଠାରୁ ଅଟେ ବ୍ରହ୍ମଅଗ୍ନି ତେଜ । ଦେହାତ୍ମାରେ ବଜେ କରିଛନ୍ତି ଦେବରାଜ ॥ ଆତ୍ମା ଶୁଦ୍ଧି ହେଲେ ମନ ଘଟ ଶୁଦ୍ଧି ପାଇ । ଊର୍ଦ୍ଧ୍ୱ ଜାଣି ଉଗ୍ର ପବନ ଅଜ୍ଞା ଚକ୍ରେ ନେଇ ॥ ଏ ଘଟକୁ ନିରନ୍ତର ଖୋଜିଅଛି କାଳ । ଚନ୍ଦ୍ର ସୂର୍ଯ୍ୟ ଜଗିଧର ଯୋଗ ଭୋଗ ଖେଳ ॥ ଚନ୍ଦ୍ର ଅଙ୍ଗେ ତିନବାର ଚନ୍ଦ୍ରକଳା ବନ୍ଧ । ସୂର୍ଯ୍ୟ ଅଙ୍ଗେ ଚଉବାର ଚଉକଳା ଭେଦ ॥ ଚନ୍ଦ୍ର ସୂର୍ଯ୍ୟଙ୍କ ଭେଦରେ ସାତବାର ହୋଇ । ଏ ଯୋଗ କହିଲୁ ମନ ଗୁପ୍ତଭାବ ଏହି ।୫୦। ପ୍ରକାଶ ବେଳକୁ ଆସି ହୋଇଲା ପ୍ରକାଶ । ଅନୁଭବ ସିନା ଜାଣେ ଅନ୍ୟରେ ପ୍ରୟାସ ॥ ଶନି, ରବି, ମଙ୍ଗଳ ଆବର ଗୁରୁ ଶୁକ୍ର । ସୂର୍ଯ୍ୟବାର ଏ ଚଉଟି ଚେତିଥିବୁ ଧରି । ସୋମ ଶୁକ୍ର ବୁଧ ଉତ୍ତର ଭାଗେ ଅଛନ୍ତି । ସାତବାର ଏହି ମାର୍ଗେ ଜଗିଥିବୁ ନିତି ॥ ତିନି

ବାଉଟରେ ମନ ଜଗିଥିବୁ ସମୀର । ଜାଗ୍ରତେ ଜଗିଲେ ବାନ୍ଧପାରୁ ବଂଶୀଧର ॥ ବାରୁଣୀ ଯୋଗ ଏହିଟି ଦକ୍ଷିଣ ସମୀରେ । ମହା ବାରୁଣୀ ପଶ୍ଚିମେ ଜଗିବୁ ଶୂନ୍ୟରେ ।୫୫। ଏହି ଯୋଗ ସାଧି ହନୁ ଲଙ୍କା କଲେ ଜୟ । ମୃତ୍ୟୁଦେବତା ଦେଖିଲେ ହୋଇବ ଅଥୟ ॥ ଶ୍ରୀରାମଙ୍କ ଆଜ୍ଞା ପାଇ ହନୁମାନ ବୀର । ଏ ଘଟେ ନାମ ବିହାର କରେ କି ପ୍ରକାର ॥ ସୁମନେ ଚିରିକରି ଦେଖିଲ୍ ବକ୍ଷସ୍ଥଳ । ରାମନାମ ପୂରିଅଛି ସବେ ହେଲ ହେଲା ॥ ମୂଳଟି ଅଟଇ ଦୃଢ଼ କହୁଛି ତୋ ହିତ । ତଟ କି ଜାଣଇ ରୁଚି ତିଅଣରେ ସୂତ ॥ ଏ ଅତି ଗୁପତ ଜ୍ଞାନ ଅଟଇ ରହସ୍ୟ । ସପ୍ତାଙ୍ଗ ଜାଣିଲେ ମନ ପାଇବୁଟି ଯଶ ।୬୦। ସିଦ୍ଧ ଏ ଉପଦେଶ କହିଲ୍ ସିଦ୍ଧି ଯୋଗ । କେବେହେଁ ଘଟରେ ମନ ନ ପଶିବ ରୋଗ । ଯୋଗ ଅଙ୍ଗେ ଭୋଗ ଅଙ୍ଗେ କରି ବନଯୋଗ । ତେବେଟି ଭୁଞ୍ଜିବେ ହରି ତଉଷଠି ଭୋଗ । ଭୋଗ ଦେଇପାରିଲେଟି ରୋଗକୁ ଜିଣିବୁ । ଚନ୍ଦ୍ର ସୂର୍ଯ୍ୟ ଶାଳେ ବାନ୍ଧି ମନ ମନ୍ତ୍ରେ ଦେବୁ ॥ ବିଷ୍ଣୁର ଖାଜ ଅଟଇ ନାମ ଗୁରିକାଗ । ପ୍ରକୃତି ପୁରୁଷଟି ବୋଲଏ ସପ୍ତାଙ୍ଗ ॥ ସପତ ଅଙ୍ଗକୁ ମନ ହେଉଛୁକରି ଶୁଣ । ସପ୍ତାଙ୍ଗରେ ଥାଇ ଅଷ୍ଟାଙ୍ଗରେ ହେବୁ ଲୀନ ।୬୫। ପଶ୍ଚିମ ଦୁଇ ଅଙ୍ଗ ଦକ୍ଷିଣ ଅଙ୍ଗ ଦୁଇ । ଚାରି ଅଙ୍ଗ ଏ ହୋଇଲ୍ ଶୁଣ ମନ ବାଇ ॥ ପୂର୍ବରେ ଦୁଇ ଅଙ୍ଗ ଉତ୍ତରରେ ଏକ ଅଙ୍ଗ । ସପତାଙ୍ଗ ସାଧ କରି ବଳ ଦେଇ ଅଙ୍ଗ ॥ ବେଦକାଣ୍ଡେ କହୁଅଛି ସାତବାର ଶୁଣ । ଉତ୍ତରରେ ବୃହସ୍ପତି ଅଛନ୍ତି ରହିଣ ॥ ପୂର୍ବରେ ଚନ୍ଦ୍ର ସୂର୍ଯ୍ୟ ଦକ୍ଷିଣେ ବୁଧ କୁଜ । ପଶ୍ଚିମରେ ଶୁକ୍ର ଶନି ହେତୁ କରି ହେଜ ॥ ଆବର ସପତ ଅଙ୍ଗେ ସପ୍ତ ସ୍ୱର ଅଛି । ଉତ୍ତରରେ ଆ ସ୍ୱର ବିହାର କରୁଅଛି ।୭୦। ପୂର୍ବରେ ଉକାର ସ୍ୱର ନାମ ସଙ୍ଗେ ସ୍ଥିତି । ଦକ୍ଷିଣେ ଏକାର ସ୍ୱର ଶକ୍ତିଙ୍କ ବସତି ॥ ପଶ୍ଚିମେ ଇକାର ସ୍ୱର ଦେବକୀ ଭୁବନ । ଅଂକାର ସ୍ୱର ଶୂନ୍ୟେ ଦେବଙ୍କ ସ୍ଥାନ ॥ ହଂସ ସ୍ୱର ଦୁଇ କି ଯେ ସପ୍ତ-

ସ୍ୱର କହ୍ବ । ଅଷ୍ଟାଙ୍ଗ ଯୋଗରେ ଉର ସପ୍ତସ୍ୱର ନେଇ ॥ ସପ୍ତସ୍ୱରେ ସାତବାର ଧାରଣାକୁ ସାଧ । ଏନା ଧାରଣାରେ ପିଣ୍ଡ ଯନ୍ତ୍ର ନୋହେ ସାଧ୍ୟ ॥ ଏନା ଧାରଣାରେ ସାଧ୍ୟ ନ ହୁଅଇ ପିଣ୍ଡ । ସର୍ପଠାରୁ ଶିଖିଲେ ସମୀର ହେବ ରୁଣ୍ଡ । ୭୫ । ପାଞ୍ଚ ସେନାପତି ଯେ ପଚିଶ ପୃଥିପତି । ନଶାଣ ବଜାଇଲେ ଉରବ ନନ୍ଦୁପତି ॥ ଦବାନଟି ଜାଗ ନାମ ଅନାହତ ଧ୍ୱନି । ମରିଲେ ସ୍ୱର୍ଗ ଲଭ ଜୀବନ୍ତେ ହେବୁ ଧନି ॥ ଦଶଦଗେ ନରେଧିଣ ଓଲଟ ପବନ । ଅବାଇ ମଣ୍ଡଳକୁ ଉଠିବୁ ଯାଇ ପୁଣ ॥ ଗୋଲହାଟ ତଟରେ ଯେ ପଡ଼ିଯିବ ହଂସ । ସେତିକି ବେଳରେ ଚେତିଥିବୁ ଆଗୁସର ॥ ଅଚେତ ପିଣ୍ଡ ମନରେ ମରଇ ନକଟେ । ହେତୁ ରଖିଥିବୁ ଜାଣ ଶୁଣ ଏକ ଚିତ୍ତେ । ୮୦ । ବେଢନ ପିଣ୍ଡ ଗୋଟିକ ସଙ୍ଗକାଳେ ଥାଇ । ଅଂଶନାଶି ପିଣ୍ଡଗୋଟି ବିନାଶ ନୁହଁଇ ॥ ନାଦକୁ ନେଇ ରନ୍ଧ୍ରରେ ଯେବେ ବାନ୍ଧିପାରୁ । ଯୋଗେଶ୍ୱର ହୋଇ ଏ ସଂସାରୁ ତରିପାରୁ ॥ ରସାଣଦଥା ପୃଷ୍ଠରେ ରସଙ୍କୁ ଭରିବୁ । ଜାରଣ ମାରଣ କଲେ ତାରଣ ପାଇବୁ ॥ ମାନବ ଜୀବ ଅଟଇ ସର୍ବ ଘଟେ ସାର । ନାମ ନ ଚିହ୍ନି ଭ୍ରମି ହୁଅନ୍ତି ନାରଖାର ॥ ଚନ୍ଦ୍ର ସୂର୍ଯ୍ୟ ନାଡ଼ି ଅଟେ ବେନି ସାଧ୍ୟ ଅଙ୍ଗ । ତାହାର ନାମଟି ଚେତା ଚନ୍ଦ୍ର ସୂର୍ଯ୍ୟ ଯୋଗ ।୮୫ । ଚନ୍ଦ୍ର ସୂର୍ଯ୍ୟ ମଧ୍ୟରେଟି ଯେବଣ ପବନ । ତାଂହାକୁ ବୋଲିଣ ମନ ଅଳକା ଭୁବନ ॥ ବେନି ପାଖୁଡ଼ାକୁ ସେବି କରଇ ପ୍ରୟାଣ । ଅନୁଭବ ଆତ୍ମାରେ ତୁ ହେତୁ କରି ଘେନ ॥ ବାମ ପାଖେଣ ଚନ୍ଦ୍ର ଦକ୍ଷିଣେ ସୂର୍ଯ୍ୟ ରହି । ଚନ୍ଦ୍ର ସୂର୍ଯ୍ୟ ମଧ୍ୟରେଟି ଶମ୍ଭୁ ନାଳ କହ୍ବ ॥ ହଂସ ବୋଲିଣ ଯେ ଅଟେ ପ୍ରଣବ ପବନ । ପ୍ରାତଃ ରବି ପ୍ରକାରେଣ ଉତ୍ଥାନ ତପନ ॥ ସୁହଂସ ବୋଲିଣ ମନ ଯେବଣ ମରୁତ । ଗଗନରେ ଉଦୟ ହୁଏ ନାମ ଚନ୍ଦ୍ରକାନ୍ତ ।୯୦। ପରମ ହଂସ ବୋଲିଣ ଯେବଣ ସେ ବାଇ । ସିଦ୍ଧିକାଳେ ମିଳିଥାଇ ସେ ସିଦ୍ଧି ଅଟେ ସେହି ॥ ହଂସ ସୁହଂସ

ଟବାଲଣ ଦୁଇଟି ହୋଇଲେ । ଓଁ କାରେ ପରମ ହଂସ ଗୁପତେ ରହିଲେ ॥ ସ୍ଥୂଳରେ ପ୍ରକାଶ ହୋଇ ନାମ ବହରିଲେ । ସେ ଅକ୍ଷର ଷଡ଼ାକ୍ଷର ପ୍ରଚ୍ଚର କରିଲେ ॥ ଚ୍ଚରି ବେଦଙ୍କ ମଧ୍ୟରେ ସ୍ଥାପିଲେ ଜଗତ । ତା ତହୁଁ ପଞ୍ଚାକ୍ଷର କରିଲେ ସମ୍ଭୁତ ॥ ପଞ୍ଚାକ୍ଷରେ ସଂସାର ଚଳାଚଳ ହୋଇ । ଏଥିମଧ୍ୟେ ଯନ୍ତ୍ର ମନ୍ତ୍ର ତନ୍ତ୍ର ଅଛି ରହି । ୯୫ । ଯେ ଯେତେ ବଖାଣିଛନ୍ତି ପଞ୍ଚାଶ ମଧ୍ୟରେ । ପଞ୍ଚାଶୁ ଅଧିକ ନାହିଁ କହିଲୁ ନିକରେ ॥ ପଞ୍ଚାଶ ପରତେ କରି ବାୟୁ ଘଟେ ବାନ୍ଧ । ଓବନ ପବନମଧ୍ୟରେ ମନ ବୁଦ୍ଧି କର ବନ୍ଧ ॥ ମନପବନ ସୁମନ ଏକଠାବ କଲେ । ବ୍ରହ୍ମ ଗଣ୍ଠି ପଡ଼ିବ କହିଲୁ ଜାଣି ଭଲେ ॥ ତା ମଧ୍ୟରେ ଦଶ ନାଡ଼ୀ ଅଟଇ ଗରିଷ୍ଠ । ଷଡଚକ୍ର ଭେଦ କରି ତିନି ନାଡୀ ଶ୍ରେଷ୍ଠ ॥ ଇଡ଼ା ପିଙ୍ଗଳା ଶୁଷୁମ୍ନା ଏହି ତିନି । ଗାନ୍ଧାରୀ ହସ୍ତୀ ଜିହ୍ୱା ପୁଷା ଯଶସ୍ୱିନୀ ।୧୧୦। ଅଲମ୍ବୁ କୁହୁ ଶଙ୍ଖିନୀ ମିଶିଣ ଏ ଦଶ । ନାମ ବୁଝାଇ କହିଲେ ହୋଇବ ଉଲ୍ଲାସ ॥ ସମାନ ପ୍ରାଣ ଅପାନ ଉଦାନ ଆଉ ବ୍ୟାନ । ପାଞ୍ଚଗୋଟି ଅଟଇ ଯେ ଜ୍ଞାନେନ୍ଦ୍ରିୟ ସ୍ଥାନ॥ ନାଗ କୂର୍ମ କୃକଳାସ ଦେବଦତ୍ତ ଚ୍ଚରି । ଧନଞ୍ଜୟ ପଞ୍ଚ ମିଶି ରହିଛନ୍ତି ଘେରି ॥ ନବ ନାଡ଼ୀ ଯୋଗୀ ଜାଗି ଅଭ୍ୟାସ କରନ୍ତି । ସେ କାଳେ ସ୍ନାନେ ମଜ୍ଜିଣ ନାମ ଆସ୍ୱାଦନ୍ତି ॥ ନିଦ୍ରା ଘରେ ମନ ରଜା କାଳେ ଜଗିଥିବୁ । ପୃଣ୍ଠାଧାର ଭୋଜନଟି କେବେ ନ କରିବୁ ।୧୦୫। ସକରେ ଭୋଜନଟି ଆହାର ବିଷ ହୁଏ । ଦିବସରେ ଭୋଜନଟି କାଳକୁ କଟାଏ ॥ ହଂସ ସୁହଂସଟି ମନ ଦୁଇଗୋଟି ପକ୍ଷୀ । ସକଳ ଦେହେ ବ୍ୟାପି ଜୀବ ପରମେ ସାକ୍ଷୀ॥ ପରମହଂସ ଯେହୁଟି ମହାଶୂନ୍ୟ କହି । ହଂସ ସୁହଂସକୁ ସେହୁ ଜାତ କରିଛଇ ॥ ହଂସର ମୁଖ ଅଟଇ ପଶ୍ଚିମ କଳଶୀ । ଡାହାଣ ବର୍ତ୍ତିକ ହୋଇ ପିଉଅଛି ପାଣି । ଏ ଯୋଗ ଧରିଣ ସ୍ନାନ ଭୋଜନ କରିବୁ । ତେବେଟି ଘଟରୁ ତୋର କାଳ ଛଡ଼ିବୁ । ୧୧୦ । ଚନ୍ଦ୍ରରେ ଶୟନ ଜାଗି ରହିବର ତେଜ । ରବି

ଘରେ ଜାଗି ଚନ୍ଦ୍ର ଉଦୟାସ୍ତେ ତେଜ ॥ ସପ୍ତାଙ୍ଗ ଯୋଗ କଥା ଶୁଣିଲୁ ମନରାଜ । ଚୈତନ୍ୟ ଚନ୍ଦ୍ର କହନ୍ତି ଅଥର୍ବିରେ ହେଜ ॥ ଚତୁର୍ଥ ଅଧ୍ୟା ଏଠାରେ ହେଲା ସମାପତ । ଗନ୍ତାୟତ ନାତି ସେ ଚୈତନ୍ୟ ଦେଇ ଚିତ୍ତ ॥ ଗଞ୍ଜାମ ମଣ୍ଡଳ ବ୍ରହ୍ମପୁରରେ ମୋର ବାସ । ପିତାଙ୍କ ନାମ ସନ୍ନ୍ୟାସୀ ତାହାଙ୍କର ଶିଷ୍ୟ ॥ ମାତାଙ୍କ ନାମ ରହାସ ସୁଗୁଣା ସୁମତି । ତାହାଙ୍କର ଗର୍ଭରୁ ଶ୍ୟାମସୁନ୍ଦର ଉତ୍ପତ୍ତି ।୧୧୫। ରାଜପଦ ଗନ୍ତାୟତ ଭରଦ୍ୱାଜ ଗୋତ୍ର । ସଣ୍ଡାମହାନ୍ତି ସାହିରେ ବସତି ପବିତ୍ର ॥ ନାମ ମୋ ଶ୍ୟାମସୁନ୍ଦର ଗନ୍ତାୟତ ଶର୍ମା । ପ୍ରେମାନନ୍ଦ ଗୁରୁ ମୋର ଅଚ୍ୟୁତ ମହାତ୍ମା ॥ କହଇ ସାରସୁଧା ଅମିୟମୟ ରସ । ସାଧୁ ସୁଜ୍ଞଜନମାନେ ପିଇ ତୁଅ ତୋଷ ॥ ଏକଶତ ଊନବିଂଶ ପଦେ ହେଲା ଶେଷ । ମିତ୍ର ଅର୍ଥ ମୋର ନାହିଁ ଜାଣ ହେ ବିଦୁଷ ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ
ସପ୍ତାଙ୍ଗ ଚନ୍ଦ୍ର ସୂର୍ଯ୍ୟ ଗତାଗତ କଥନେ ମନ ଚୈତନ୍ୟ ସମ୍ବାଦେ
ଶ୍ରୀ ସାରସୁଧା ଗୀତା ନାମ ଚତୁର୍ଥ ଅଧ୍ୟାୟଃ ।

—ମନ ଉବାଚ—

ସବିନୟେ ପାଦପଦ୍ମେ ହୋଇଣ ଦଇନ୍ୟ । କରଯୋଡ଼ି ମନ ଅତି କରଇ ଜଣାଣ ॥ କଥାଏ ପଚାରିଲା ହେଉ ହେ ଗୁରୁ ଚୈତନ୍ୟ । ସପ୍ତାଙ୍ଗରେ ଗତାଗତ କହ ପୂର୍ଣ୍ଣବ୍ରହ୍ମ ॥ କେ କେଉଁ ଲତାରେ ସେହୁ କରନ୍ତି ପ୍ରୟାଣ । ସପ୍ତାଙ୍ଗର ଯୋଗ ଭୋଗ କହ ଗୁରୁ ବ୍ରହ୍ମ ॥

—*—

## ତୃତୀୟ ଅଧ୍ୟାୟ

—ଚୈତନ୍ୟ ଉବାଚ—

ଶ୍ଳୋକଃ

ଏକାକ୍ଷରଂ ପରଂ ଜ୍ଞାନଂ ଏକାକ୍ଷରଂ ପରଂ ତପଂ ।
ଏକାକ୍ଷରଂ ପରଂ ମନ୍ତ୍ରଃ ବ୍ରହ୍ମ ଏକାକ୍ଷରଂ ଗତିଃ ॥




## ମହାଶୂନ୍ୟ ବଖାଣ

କହୁଛନ୍ତି ଶ୍ରୀ ଚୈତନ୍ୟ ଶୁଣ ମନରାଜା । ବସ୍ତାର କହିବା ସପ୍ତ ଅଙ୍ଗର ତରଜା ॥ ଆବର କହିବା ମହାଶୂନ୍ୟ ବଖାଣକୁ । ଯଶୋବନ୍ତ କହିଥିଲେ ଭକତମାନଙ୍କୁ ।୫। ଭକତେ ଜାଣିବେ ବଖାଣର ଭେଦମାନ । ପରୀକ୍ଷା ବେଳେ କହିବା ବଖାଣର ଚିହ୍ନ ॥ ଷଡ଼ଚକ୍ର ଷୋଳନାମ ବତିଶ ଅକ୍ଷର । ବ୍ୟାନ ବାୟୁ ଚଉଷଠି ଅଣାକାର ଠାର ॥ ତ୍ରିକୁଟ ଉପରେ ଦେଖ ଏକାକ୍ଷର ପୁର । ଏକାକ୍ଷରପରେ ଛନ୍ତି କିଶୋରୀ କିଶୋର । ଜ୍ଞାନ ତପଃ ମନ୍ତ୍ର ସବୁ ଅର୍ପଣ ହୋଇଛି । ମହାଶୂନ୍ୟେ ଲଗିକରି ଅଲଗା ହୋଇଛି । ଆବର ଶୁଣ ସୁମନେ ସପ୍ତାଙ୍ଗ ଚରିତ । ସମସ୍ତ ହେବାରୁ ଗୀତା ହେଲା ପ୍ରକଟିତ ।୧୦। ଜ୍ଞାନ ସପ୍ତ ଭୂମି ବୋଲି ବେଦାନ୍ତରେ କହି । ଚନ୍ଦ୍ର ସୂର୍ଯ୍ୟ ଅଙ୍ଗେ ମନ ବାୟୁ ମିଶା ନେଇ ॥ ଚନ୍ଦ୍ର ଅଙ୍ଗେ ଚନ୍ଦ୍ରକଳା ଜାଗି କରି ଦେଖ । ସୂର୍ଯ୍ୟ ଅଙ୍ଗେ ସୂର୍ଯ୍ୟକଳା ରହୁ ସୂର୍ଯ୍ୟ ପାଖ ॥ ଚନ୍ଦ୍ର ସୂର୍ଯ୍ୟ ଯୋଗ ମଧ୍ୟେ ସାତବାର ହୋଇ । ପଞ୍ଚଭୂତ ଆତ୍ମାକୁ ସେ ଆକୋରି ଅଛଇ ॥ ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ବେନି ପାଞ୍ଚ ପାଞ୍ଚ କଳା । ସପ୍ତବାରେ ଚନ୍ଦ୍ର ସୂର୍ଯ୍ୟ ହୋଇଛନ୍ତି ମେଳା ॥ ତିନିବାର ଚନ୍ଦ୍ର ଅଟେ ଚାରିବାର ସୂର୍ଯ୍ୟ । ସାତବାର ହୋଇଅଛି ଜ୍ଞାନ ଘରେ ଖୋଜ ।୧୫। ବ୍ରହ୍ମ-

ଜ୍ଞାନ ସପ୍ତାଙ୍ଗକୁ ପିଣ୍ଡେ ଦେବା କହି । ପିଣ୍ଡ ମଧ୍ୟେ ସାତବାର ଶୁଣ ଭୁଲ ନୁହିଁ ॥ ଶରୀରେ ହସ୍ତ ମାରଣ କହିବା ବୁଝାଇ । ଡାହାଣ ନୟନ ଶନିବାର ଅଛି ହୋଇ ॥ ବାମ ନୟନଟି ସୋମବାର ଯେ ଅଟଇ । ଦକ୍ଷିଣ କର୍ଣ୍ଣ ମଙ୍ଗଳବାର ବୋଲି କହି ॥ ବାମ କର୍ଣ୍ଣ ବୁଧବାର ପୁଣି ସେ ଅଟଇ । ଡାହାଣ ନାସିକା ଗୁରୁବାର ଶୁଣ ନୁହିଁ ॥ ବାମ ନାସିକାକୁ ଶୁକ୍ରବାର ଯେ ବୋଲଣ । ରବିବାର ଗୋଟି ଜିହ୍ୱା ବୋଲି କରି ଜାଣ । ୨୦ । ଏମନ୍ତ ଶରୀରେ ପୁଣି ହୋଇଛି ଭିଆଣ । ଶନି ରବି ମଙ୍ଗଳ ଯେ ଗୁରୁବାର ଘେନ ॥ ପିଙ୍ଗଳା ନାଡ଼ୀ ଯେ ଏହି ସୂର୍ଯ୍ୟାସ୍ୱନ ଘେନ । ସୋମ ବୁଧ ଶୁକ୍ରବାର ଏହି ତିନି ପୁଣି ॥ ଇଡ଼ା ନାଡ଼ୀ ଯେ ଚନ୍ଦ୍ରାସ୍ୱନ ବୋଲି ଜାଣି । ମଧ୍ୟ ନାଡ଼ୀ ଗୋଟିକ ଅଟଇ ଶିଶୁମୁନ ॥ ଗଙ୍ଗା ଯମୁନା ଯେ ବହେ ସରସ୍ୱତୀ ସିନା । ପିଙ୍ଗଳା ଯେ ଗଙ୍ଗା କହି ଇଡ଼ା ଯମୁନା ॥ ଶିଶୁମୁନା ନାଡ଼ୀ ଯେହୁ ସରସ୍ୱତୀ ସେହି । ରବିବାର ଗୋଟି ଜିହ୍ୱା ବୋଲଣ ଯେ କହି । ୨୫ । ଏ ଦିନର ରବି ଚନ୍ଦ୍ର ଗୋଳ ପୂର୍ଣ୍ଣ ହୋଇ । ହେତୁ କରି ଜାଣିଥିବୁ ଶିଶୁମୁନା ନୁହିଁ ॥ ସୂର୍ଯ୍ୟ ଯେବେ ଚନ୍ଦ୍ର ଘରେ ଉଦୟ ହୁଅଇ । ତେବେ ସେ ଜାଣିବ ବିପରୀତ ସେ ଦିନହିଁ ॥ ଗୁରୁ ମୁଖୁ ଏହା ବୁଝି ହେତୁରେ ରଖିବ । ଉଦୟ ଅସ୍ତକୁ ପୁଣି ହେତୁ କରିଥିବ ॥ ବାମାଙ୍ଗରେ ଚନ୍ଦ୍ରକଳା ତିନିବାର ଘେନ । ଷାଠିଏ ଲିତାରେ ସେହୁ ଭ୍ରମନ୍ତି ଅବନୀ ॥ ଦକ୍ଷାଙ୍ଗରେ ସୂର୍ଯ୍ୟକଳା ଚାରିବାର ଧରି । ଷାଠିଏ ଲିତାରେ ସେହୁ ଫିଲିଫମା କରି । ୩୦ । ଷାଠିଏ ଦଣ୍ଡରେ ଅଟେ ଚନ୍ଦ୍ର ସୂର୍ଯ୍ୟ ଯୋଗ । ପିଣ୍ଡ ବ୍ରହ୍ମାଣ୍ଡକୁ ଦୁହେଁ କରୁଛନ୍ତି ଭୋଗ ॥ ରବିବାର ଦିନ ମନ ଚନ୍ଦ୍ର ସୂର୍ଯ୍ୟ ମେଳ । ସେ ଦିନ ଜାଣିବୁ ମନ ଇଡ଼ା ପିଙ୍ଗଳା ॥ ଚାରି ପାଖୁଡ଼ାକୁ ଜଗିଥିବୁ ଶୁଦ୍ଧ ମନ । ସେହି ଦିନ ନ ଛୁଇଁବୁ ସ୍ତ୍ରୀ ଅଙ୍ଗ ଜାଣ ॥ ମୂଳ କମଳକୁ ଚାପି ଧରିବୁ ଓଲଟି । କାଳପାଶ ଦଉଡ଼ି କା

ପକାଇବୁ କାଠି ॥ ସୋମବାରେ ଜାଗିରଖ ସୋମ ସୂର୍ଯ୍ୟ ଦୁଇ । ସୂର୍ଯ୍ୟରେ ଆହାର କରି ରହିଥିବୁ ଭୁଞ୍ଜି ।୩୫। ପ୍ରତି ପ୍ରତି କହୁଅଛି ହେତୁ ରଖିଥିବୁ । ଚନ୍ଦ୍ରକଳା ଠାଣିଧରି ସୂର୍ଯ୍ୟକୁ ଜାଣିବୁ ॥ ଷଡ଼ଦଳ ଉଜାଣ ଯେ ଚନ୍ଦ୍ରକଳା ସଙ୍ଗେ । ସାତ ଘଣ୍ଟ ଉତ୍ତରୁ ରମିବୁ ସ୍ତିରୀ ସଙ୍ଗେ ॥ ମଙ୍ଗଳବାରରେ ମନ ମଙ୍ଗିଥିବୁ ଠାଣି । ବୈକୁଣ୍ଠ ସ୍ଥାନକୁ ମନ ବୁହାଇବୁ ପାଣି ॥ କାଳକୁ ଖଣ୍ଡିବୁ ମନ ବ୍ରହ୍ମଅଗ୍ନି ଜାଳି । ସେହ୍ୱଦ୍ଧନ କରିବୁଟି ସ୍ତିରୀ ସଙ୍ଗ ମେଳ ॥ ନ ଛୁଇଁବୁ ସ୍ତିରୀ ରହ ନ ଦେବୁଟି ମତି । ଏତେ ଲକ୍ଷଣ ଥିଲେ ଯେ ବୋଲାଇବୁ ଯତି ।୪୦। ବୁଧବାରେ ମନ ରାଜା ସ୍ଥାନମାନ ଭେଦ । କାଳଚକ୍ର କୁମ୍ଭାରକୁ ମନାଇଣେ ଛେଦ ॥ ଅଷ୍ଟଦଳ ଓଁକାରରେ ମନକୁ ନିରୋଧ । ବାର କଳା ଧରି ଚୂରି କଳା ମଧ୍ୟେ ସାଧ ॥ ଫିଟିଯିବୁ ମହାଦଣ୍ଡ ଫିଟିଯିବ ବନ୍ଧ । ଏତେକ ଲକ୍ଷଣେ ମନ ଅଜ୍ରାମର କନ୍ଧ ॥ ଗୁରୁବାରେ ଶ୍ରୀଗୁରୁ ବଚନ ଥିବୁ ଧରି । ନ କରିବୁ ଶୃଙ୍ଗାରଟି ନ ଛୁଇଁବୁ ସ୍ତିରୀ । ଚନ୍ଦ୍ରରେ ସୁମରିଥିବୁ ପଦ୍ମେ ଥିବ ଦୃଷ୍ଟି । ପଦ୍ମରେ ସୂର୍ଯ୍ୟ ଅଙ୍ଗରେ ମିଳାଇବୁ ମତି । ୪୫ । ମଧ୍ୟାହ୍ନରେ ସମଭାବେ କରିବୁ ଦର୍ଶନ । ପ୍ରେମରେ ପଦ୍ମକୁ ଠାଣି ଲକ୍ଷିବୁରେ ମନ ॥ ଶୁକ୍ରବାରରେ ଅଟଇ ଯୋଗ ଚନ୍ଦ୍ର ବୋଲି । ବାମ ଦକ୍ଷିଣେଟି ମନ ପବନ ସଙ୍ଗୋଳି ॥ ଉତ୍ତରରୁ ପବନ ବୋହିବ ଯେତେବେଳେ । ରମଣ କରିବୁ ମନ ଅର୍ଦ୍ଧ ନିଶା କାଳେ ॥ ଶନିବାରେ ମନ ରାଜା ହୋଇ ଏକ ମନ । ମନବାଇ ମଣ୍ଡଳକୁ ଠେକିବୁ ପବନ ॥ ହଂସର ସରୋବରରେ ନାଚିବୁ ତ୍ରିମିସ୍ତ । ଗୋଲହାଟେ ମନବାଇ ପଡ଼ିଯିବ ହରି । ୫୦ । ସାତବାର କହିଲଇଁ ତୋର ଭକ୍ତ ଛାଡେନ । ଗୁରୁଭକ୍ତି ବିନା ଏହୁ ନ ଜାଣନ୍ତି ଆନେ ॥ ସେବଣ ତିଥିରେ ମନଚନ୍ଦ୍ର ସୂର୍ଯ୍ୟ ବନ୍ଦୀ । ଏ ଭେଦ ଜାଣିଲେ ମନଚନ୍ଦ୍ର ସୂର୍ଯ୍ୟ ସିଦ୍ଧି ॥ ସେହି ତିଥି କ କହିବା ଶୁଣ ମନ ଦେଇ । ତୋହର ଘଟରେ ସବୁ ଦେଖାଇବା କହି ॥ ଗଙ୍ଗା ଯମୁନା

ଆବର ସରସ୍ୱତୀ ତନ । ଇଅଁଳା ପିଅଁଳା ଶିଶୁମୁନା ନାଡ଼ୀ ଘେନ ॥
ଏ ସପ୍ତ ତୀର୍ଥରେ ମନ ପଶି ସ୍ନାନ କର । ପୁନଃରପି ନ ଦେଖିବୁ
ଜନ୍ମଗଜ ପୁର । ୫୫ । ତ୍ରିକୁଟେ ସପ୍ତ ତୀର୍ଥ ମିଳାଇ ପାରୁ ଯେବେ ।
ସେ ହଂସ ସ୍ୱାମୀ ହୋଇବ ସର୍ବେବରେ ତେବେ ॥ ଭ୍ରୂଲତା ମଧ୍ୟକୁ
ଅନା ତ୍ରିକୁଟର ଘର । ଓଁ କାରେ ଖେଳୁଅଛନ୍ତି ରାଧିକା ଶଙ୍କର ॥
ଆଖି ଲଖି ଲଗାଇଲେ ପ୍ରତ୍ୟକ୍ଷେ ଦେଖିବୁ । ସୁଧାଂଶୁ ବଦନମାୟାକୁ
ଭାବେ କଣିନେବୁ ॥ ନାଦ ବିନ୍ଦୁକୁ ଯେବେହି ନ ପାରଇ ସାଧି ।
ବ୍ରାହ୍ମଣ ବୈଷ୍ଣବ ପଣେ ନୁହଇଟି ସିଦ୍ଧି ॥ ସାତବାର ଭେଦାଭେଦ
ତୋତେ ଦେଲି କହି । ଗୁପତ ଜ୍ଞାନ କହିଲି ନ କହିବୁ କାହିଁ ।୬୦।
ସୁଜନେ ଦେଖି କହିବୁ ଆନେ ନ କହିବୁ । କହିଲେ ଶପଥ ମୋର
ଭୁଞ୍ଜିବୁ ॥ ଶଙ୍କର ବିନା ଏ କଥା ନ ଜାଣନ୍ତି କେହି । କିଛି
କିଛି ନାରଦ ଯେ ଜାଣିଛନ୍ତି ତହିଁ ॥ ନାନାଦି ଯୋଗ କର୍ମକୁ କରନ୍ତି
ଧାରଣା । ନାନାଦି ଦେବାଦେବୀଙ୍କୁ କରନ୍ତି ମାନନା ॥ ନାନାଦି ମନ୍ତ୍ର
ଜପି ସ୍ୱଗୁଣ କର୍ମ କରେ । ଗୁପ୍ତ ଅବାଟ ଦେଖାଇ ସଂସାରକୁ
ତରେ ॥ ମରିବା ନ ଜାଣେ ଜୀବ ଜୀଇଁବା ନ ଜାଣେ ।
ଦାମ୍ଭିକ ପଣେ ମୁଁ କାର ବଚନ ବଖାଣେ । ୬୫ । ଏ ସାତ ବାରର
ଜ୍ଞାନ ନ ଜାଣନ୍ତି ଯେହୁ । କୋଟି କଳ୍ପାନ୍ତରେ ଜୀବ ଯୋଗୀ
ନୁହେଁ ସେହୁ ॥ ଯାବତ ଏ ବ୍ୟାଧି ନ ପଶିବ ଯେଉଁ ବାଟେ । ସେ
କଥା କହୁଛି ଶୁଣ ଜାଗ ତୋର ଘଟେ ॥ ଡାହାଣ ଭାଗେ ମଙ୍ଗଳଗୁରୁ
ରବି ଶନି । ଜଣିବୁ ସାମ୍ୟାହ୍ନେ ଯୋଗୀ ବେଳକାଳ ଜାଣି ॥ ସୋମ
ଶୁକ୍ର ବୁଧ ତିନି ବାମେଣ ଉଦୟ । ନଶାନ୍ତେ ଜାଗିଣ ଖଟେ କଷାଇବୁ
ଲୟ ॥ ଯାହାର ଘରରେ ଯେହୁ ସେହୁ ଜଗିଥାଇ । ଚେତା ଥାଇ
ଜାଣିଲେ ଭୁ ସବ ଜୟ ହୋଇ । ୭୦ । ଆପଣାର ଘର ଛାଡ଼ି ପର
ଘରେ ଥିବ । ସେହି ଦିନ ପ୍ରୟାଣହି କେବେ ନ କରିବ ॥ ବିପକ୍ଷତ

ବୋଲୁଇଛି ଜାଣ ସେ ବଚନର । ଯେଣେ ଗଲେ ଜନ୍ମ ନାହିଁ କ୍ଷଣରେ
କୁମର ॥ ନିଶାନ୍ତ ଶେଷରେ ସୂର୍ଯ୍ୟ ଘରେ ଚଳାଇବୁ । ସାୟାହ୍ନେ
ଚନ୍ଦ୍ରରେ ଶୂନ୍ୟ ଭୋଗେ ଭୋଗ ଦେବୁ ॥ ଚନ୍ଦ୍ର ସୂର୍ଯ୍ୟ ଦୁଇ ସ୍ୱରେ
ଭୋଜନ ଶୟନ । ଭେଦାଭେଦ ଜାଣି କଲେ ବଡ଼େ ଚେତମାନ ॥
ସୂର୍ଯ୍ୟାୟୁଣ ଭୋଜନରେ ବହୁ ସୁଖ ପାଇ । ଚନ୍ଦ୍ରାୟୁଣେ ଯୋଟଧ୍ୟାନ
ଆରୋଗ୍ୟ ହୁଅଇ ॥ ଦିବା ଭାଗେ ଚନ୍ଦ୍ର ସ୍ୱର ସାଧିଲେ ଉତ୍ତମ ।
ରାତ୍ରରେ ସୂର୍ଯ୍ୟାୟୁଣରେ ସ୍ୱରକୁ ନେନିମ ॥ ଗୁରୁ ସ୍ମର ପଦ୍ମାସନେ ମନ
ଥିର କର । ପବନ ସାଧନ ଭିନ୍ନ କ୍ରିୟା ଶୁଣ ବାର ॥ ମୁଖ କର୍ଣ୍ଣ
ଚକ୍ଷୁ ନାସା ଅଙ୍ଗୁଳି ନିରୋଧି । ବାୟୁ ନିରୋଧି ରଖିବ ମାତୃକାରେ
ଶୋଧି ॥ ପବନ ଉଜାଣି ରଖ ନିଜ ଶକ୍ତି ବଳେ । ଇନ୍ଦ୍ରିୟ ମନ
ଅଚଳ କରି ତୁ ନିଷ୍ଠଳେ ॥ ବ୍ରହ୍ମରନ୍ଧ୍ର ସ୍ପର୍ଶ କର ଶୁଷୁମ୍ନା ପ୍ରକାଶ ।
ପଞ୍ଚଭୂତ ଶୂନ୍ୟ ହେବ ହେବୁ କର ଶିଷ୍ୟ ।୮୦। ବ୍ରହ୍ମର ଦର୍ଶନ ପ୍ରାପ୍ତି
ଏ ମାର୍ଗ ସାଧନେ । ଜ୍ୟୋତିରାନନ୍ଦ ଆନନ୍ଦେ ମିଳନ୍ତି ଦର୍ଶନେ ॥
ଚନ୍ଦ୍ରରେ ସୂର୍ଯ୍ୟକୁ ପିଇ ସୂର୍ଯ୍ୟ ଚନ୍ଦ୍ରେ ପିଅ । ଏ ଭାବେ ସାଧନା କରି
ଅଜାମର ହୁଅ ॥ ସପ୍ତାଙ୍ଗରେ ଥାଇ ମନ ଅଷ୍ଟାଙ୍ଗକୁ ଯାଇ । ନିଦାନ
କହନ୍ତି ଗୁରୁ ହେତୁ ରଖ ଭୁଝି ॥ ଅଷ୍ଟାଙ୍ଗ ଯୋଗକୁ ଗଲେ ନିଷ୍ଟେ
ପୂରେ କାଳ । ସପ୍ତାଙ୍ଗେ ଥାଇ ଅଷ୍ଟାଙ୍ଗେ ବ୍ରହ୍ମଅଗ୍ନି ଜାଳ ॥ ବ୍ରହ୍ମଅଗ୍ନି
ମଧ୍ୟରେଟି ଚନ୍ଦ୍ର ସୂର୍ଯ୍ୟ ବହ୍ନି । ଦହନ ଘରରୁ ଦେହ ଆଣି
ପାଲଟାଇ ।୮୫। ଦହନ ଘରରୁ ଯେବେ ଅଙ୍କୁରିବ ମନ । ଯୋଗରେ
ଯୋଗୀନ୍ଦ୍ର ହେବୁ ଆରେ ଭୁଲମନ ॥ ଏ ଜ୍ଞାନ ସାଧିଣ ହର ଭୂତ
ଭସ୍ମ କଲେ । ଘଠ ଭସ୍ମ ଅଙ୍ଗେ ବୋଳି ପ୍ରଳୟ ନୋହିଲେ ॥
ଚତୁର୍ଦ୍ଦଶ ଭୁବନେ ଆଧାତ୍ମ ଯୋଗ ସାର । ଜ୍ଞାନ ଧ୍ୟାନ ଅନାହତେ
ବାନ୍ଧ ବଂଶୀଧର ॥ ପରମ ଅମୃତ ଏହୁ ପାନ କରିଥିବୁ । ଚତୁର୍ଦ୍ଦଶ
ଭୁବନରେ ଯୋଗୀନ୍ଦ୍ର ହୋଇବୁ ॥ ଜନ୍ମ ମୃତ୍ୟୁ ହେଉଛନ୍ତି କର୍ମଯୋଗ
ଯେନ । କର୍ମଫଳ ଯେନ ଜନ୍ମ ହୋନ୍ତି ନାନା ଯୋନି । ୯୦ । ଏ

ଉପଦେଶ ପ୍ରକଟ ନ କରିବୁ ତୁହି । ଆନ୍ତୁ ବାଇଗଣ ପରି ନ ବାଢ଼ିବୁ କାହିଁ ॥ ଦୁର୍ଜ୍ଜନେ ପ୍ରକଟ କଲେ ଗୁରୁଦ୍ରୋହୀ ହେବୁ । ଜୀବ ପରମ ରହସ୍ୟ ସୁପ୍ତେ କହିବୁ ॥ ଅତ୍ୟନ୍ତ ଗୁପତ ଏହି ବ୍ରହ୍ମଜ୍ଞାନ ରସ । ଗୁରୁ ଆଜ୍ଞାକୁ ଅବଜ୍ଞା ନ କରିବୁ ଶିଷ୍ୟ ॥ ଗୁରୁ ଅସନ୍ତୋଷେ ବଳା ସବୁ ହୁଏ ନାଶ । ତିନ ପୁରେ ଜୟ ନାହିଁ ବୃଦ୍ଧଙ୍କ ଆଦେଶ ॥ ସ୍ମୃତି ସ୍ମୂର୍ତ୍ତିରେ ଗୁରୁ ରହସ୍ୟ ବୁଝିବୁ ॥ ଗୁରୁଦ୍ରୋହୀ ସଙ୍ଗେ ସଙ୍ଗ ନ ହୋଇବୁ ବାବୁ ।୯୫। ଗୁରୁ ଗୀତା ପଢି ଗୁରୁ ତତ୍ତ୍ୱକୁ ବୁଝିବୁ । ଗୁରୁ ଆଜ୍ଞା ନ ମାନିଲେ ରୌରବେ ପଡ଼ିବୁ ॥ ଚନ୍ଦ୍ର ସୁର୍ଯ୍ୟ ଥିବାଯାଏ ନ ହେବୁ ଉଦ୍ଧାର । ରକ୍ଷା କରି ନ ପାରିବେ ବ୍ରହ୍ମାଣ୍ଡ ଈଶ୍ୱର ॥ ଗୁରୁ ଗୁପତ ଜ୍ଞାନଟି ହୃଦେ ଥିବୁ ଧରି ॥ ଜନ୍ମ ମୃତ୍ୟୁ ମିଶ ଅଶୀ ଚଉରାଅ ଘାଣ୍ଟୋରି ॥ ବିବୀଜରୁ ଷଡ଼ାକ୍ଷର ମହାମନ୍ତ୍ର ଜାତ । ମନ୍ତ୍ରରାଜ ଷୋଳ ନାମ ହୋଇଲେ ସମ୍ଭୁତ ॥ ହରେ ହରେ ଅଷ୍ଟ ନାମ ଗୁରି ରାମ ରାମ । କୃଷ୍ଣ କୃଷ୍ଣ ଚାରି ଷୋଳ ମହାମନ୍ତ୍ର ଜାଣ ।୧୦୦। ବତିଶ ଅକ୍ଷର ହୋଇ ମହାମନ୍ତ୍ର ହେଲା । ମନ୍ତ୍ରରାଜ ସୂକ୍ଷ୍ମେ ଥାଇ ଓଲଟି ରହିଲା ॥ ଚାରିଅଟି ପୁଂଲିଙ୍ଗ ଅଟେ ନଅଟି ସ୍ତ୍ରୀଲିଙ୍ଗ । କୃଷ୍ଣ କ୍ଲୀବଲିଙ୍ଗ ଅଟେ ନପୁଂସକ ସଙ୍ଗ ॥ ବିପୁରୀ ଶ୍ରୀକୃଷ୍ଣ ଦୁହେଁ ନୁହନ୍ତି ଭିନ୍ନ । ସବୁ ମନ୍ତ୍ରେ ଯନ୍ତ୍ରେ ଛନ୍ତି କାଳୀପୂ ମର୍ଦ୍ଦନ ॥ ବିବୀଜରୁ ହରେ ରାମ କୃଷ୍ଣ ଜାତ ହେଲେ । ଷଡ଼ାକ୍ଷର ନାମ ମୂର୍ତ୍ତି ଧାରଣ କରିଲେ ॥ ହ୍ରୁଁ ଇଁ ହରେ ଶ୍ୱେତବର୍ଣ୍ଣ ଜଳଦ ମୂରତି । ଶ୍ଲୀ ଇଁ ରାମ ନୀଳବର୍ଣ୍ଣ ହାରନ୍ତ୍ରେ ବସତି ।୧୦୫। କ୍ଲୀ ଇଁ କୃଷ୍ଣ ଶ୍ୟାମ ବର୍ଣ୍ଣ ବିବୀଜକୁ ଧରି । ଭ୍ରୂଲତା ମଧ୍ୟେ ଖେଳନ୍ତି ଦ୍ୱିବାହୁ ପ୍ରସାରି ॥ ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ହେବ । ବଜେ କରି ଅଛନ୍ତି ଚତୁର ବଂଶୀପାଣି ॥ ବଜପ୍ୟେ ଅନ୍ନପୂର୍ଣ୍ଣା ଗାୟତ୍ରୀ ରୂପ ହୋଇ । ଶ୍ୱେତ ହାରିଦ୍ର ବର୍ଣ୍ଣରେ ଜଗଜନ ମୋହି ॥ ଷଡ଼ଭୁଜା ମହାମାୟୀ ହାସି ହୋଇକରି । ଶ୍ରୀକରେ ଖପର ଶୋହେ ବିପୁର ସଂହାରି ॥ ଏକ କରେ କାତି ଆଉ କରେଣ ଖଡ଼ଗ ।

ଆନ ହସ୍ତେ କାଳଚକ୍ର ପ୍ରତାପୀ ଭୁଜଙ୍ଗ । ୧୦୦ । ଅନ୍ୟ ହସ୍ତରେଣ ଛେଳି ମହାତେଜ ହୋଇ । ଆରେକ କରେ ଡ଼ମ୍ବରୁ ମେଦିନୀ କମ୍ପଇ॥ ଗଳାଦେଶେ ମୁଣ୍ଡମାଳ ଦିଶେ ଶୋଭାବନ । ଲହ ଲହ ଜିହ୍ୱା ପୁଣି କରାଳ ବଦନ ॥ ଯାହାରେ ସଦୟ ସୁତା ହେବେ ଷଡ଼ଭୁଜା । ନିତ୍ୟେ ଭୁଟଇ ଜାଣ ଶୁଣ ମନରାଜା । ଷୋଡ଼ଶ କଳାରେ ପୂର୍ଣ୍ଣ ସର୍ବ ରୂପଗୋଟି । ନିପୁର ମୋହିନୀ ଚନ୍ଦ୍ରା କର ବିବାରତ ॥ ଓଁକାର ସ୍ୱରୂପିଣୀ ସେ ଗାୟତ୍ରୀ ଅଟନ୍ତି । ଚତୁଃଷ୍ଟାଦେ ହରିଣ ଲୀଳା ବିଳସନ୍ତି । ୧୧୫ । ଦେବନାଶନ ବଟଟି ସେଠାରେ ରହିଛି । ଦୋମୁହାଁ ସର୍ପ ସେଠାରେ ଗର୍ଜ୍ଜନ କରୁଛି ॥ ସେ ବଟର ଡାଳ ସଦା ଚଳ୍ଳବଣ ଥାଇ ॥ ସର୍ବଦା କୋମଳ ପତ୍ରେ ପ୍ରଫୁଲ୍ଲ ଦିଶଇ ॥ କ୍ଷୀରବନ୍ଧି ବଟପତ୍ରରେ କରନ୍ତି ଶୟନ । ପାଦ ମଞ୍ଜାକୁ ଅଛନ୍ତି ସମସ୍ତ ଜାଣିଣ ॥ ଅନାଦି ପୁରୁଷ ଆଦି ସଂଯୁକ୍ତ ହୋଇଣ । ନିତ୍ୟରାସ କ୍ରୀଡ଼ା ସେହୁ ଚୌରାଶି କନ୍ଦେଣ ॥ ନାଗଲୋକମାନେ ଯାଇ ନାଶ ହେଉଛନ୍ତି । ଯିବାଲୋକେ ଆଉ ପୁଣି ଫେରି ନ ଆସନ୍ତି । ୧୨୦ ॥ ସକ୍ଷ୍ମ ଅଙ୍ଗେ ସକ୍ଷ୍ମ ସେବା ଯେ ଜନ କରନ୍ତି । ଅଧରାଧର ଅମୃତେ ସଦା ତୃପ୍ତ ଥାନ୍ତି ॥ ସେଠା ପରାପର ନାହିଁ ପୁରିଅଛି ରହି । କଳିଯୁଗେ ଆବିର୍ଭାବ ବୌଦ୍ଧ ରୂପ ହୋଇ ॥

ମନ ଉବାଚ

ଅତ୍ୟନ୍ତ ଆନନ୍ଦ ହୋଇ ପଦ୍ମପାଦେ ପଡ଼ି । କହନ୍ତି ଚୈତନ୍ୟ ଚନ୍ଦ୍ର ସଂଶୟକୁ ଫେଡ଼ି ॥ ଏଥିର ସନ୍ଦେହ ମୋତେ ଲାଗିଲା ଗୋସାଇଁ । ଗତାନ୍ତ ସମସ୍ୟା ନାଥ କହିବା ବୁଝାଇ ॥ ଏପରି କହିଣ କମ୍ପା ବାରେ ପଚାରଇ । ପ୍ରତି ପ୍ରତି କରି ତୋଷ କର ଯୋଡ଼ିଯାଇ । ୧୨୫ । ମରିବାପାଇଁ ସେ କର୍ମ କରୁଥାନ୍ତି ସେହି । ଏଥିର ଫଳ ମୋତେଟି କହୁ ବଶୁନାହିଁ ॥ ରୋପିବା ବୃକ୍ଷଟି ଯେବେ ନ ଫଳିବ ଫଳ । ଅଫଳନ୍ତି ଫଳ ବୋଲି ବୋଲିବେ ସକଳ ॥

ଦେଖଣାହାର ମାନବେ ଟାହ୍ୟ କରୁଥିବେ । ତାହାର ତତ୍ତ୍ୱ ନ ଜାଣି ନିଷ୍ଠୁର କହିବେ ॥ ଶିବ ହନୁ ବିଭୀଷଣ ମାର୍କଣ୍ଡ ଗଣେଶ । ଭୁଷଣ୍ଡ ଶୁକ ଏ ସଙ୍ଗେ ହେଲେ ଅମରଶ ॥ ସିଦ୍ଧାନ୍ତ ହୋଇଥିବାରୁ ରହିଥିଲି ଘଟ । ଭବ ପାଦେ ଜଡ଼ିବାରୁ ହୋଇଲେ ମୁରାଟ । ୧୩୦ । ନମସ୍ତେ ଯଶୋଦା ସୁତ ଘେନ ମୋ ଦଇନ । ଯେଣିକ ଫୁଟିଲେ ଜଣେ ତୋ ରୂପ ଦର୍ଶନ ॥ ଝୁଟକ ବଜାଇ ପଛ ହଦା ଥାଉ ରସି ନ ଦେଖିଲେ ଝୁରି ହେଉଥାଉ ଅହର୍ନିଶି ॥ ତୋହର ଜଞ୍ଜାଳ ନାଥ ମୋର ଶ୍ରେୟସ୍କର । ତୋହର ଆନନ୍ଦ ମୋର ସଦା କାଉବାର ॥ ଚେଣୁକରି ବାଉଳି ପଥରେ ବାରବାର । ବସ୍ତୀର୍ଣ୍ଣରେ ବୁଝାଇବ ବରଜସୁନ୍ଦର ॥

ଚୈତନ୍ୟ ଉବାଚ

ପୁଚ୍ଛିବା କାରଣ ଶୁଣ ଜୀବଆତ୍ମା ବେନ । ବ୍ୟୋମଘରେ ସ୍ଥିରକର ଚେତାଚେତ ପୁଣି । ୨୩୫ । ଅଫଳନ୍ତ ବୃକ୍ଷ ବୋଲି ଯାହାକୁ ବୋଲନ୍ତି । ଅପ୍ରାକୃତ ପ୍ରେମମୂର୍ତ୍ତି ସେହିଟି ଅଟନ୍ତି । ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରଉଛି ରହି । ବ୍ରହ୍ମ ଗାୟତ୍ରୀ ପାବଚ୍ଛି ସେଠା ହୋଇଛଇ ॥ ଦ୍ୱିଷଡଶାକ୍ଷର ଗାୟତ୍ରୀ ପ୍ରଣବ ଚୌଷଠି । ଟଙ୍କା ଭଙ୍ଗା ଖେଳସୂତେ ଖେଳନ୍ତି ଶ୍ରୀବଛି ॥ ଏକରୁ ଅନେକ ହୋଇ ଅନେକରୁ ଏକ । ଚଉଷଠି ପଇସାକୁ ଟଙ୍କା ଘରେ ଯୋଖ ॥ ପିଶାଣ ଗୁଣଣ ଆଦ୍ୟ ହରଣ ସହିତ । ଏ ତିନି ସୂତ୍ରକୁ ଗଲେ ଫେଡ଼ିବୁ ଯାବତ । ୧୪୦ । ଜ୍ଞାନକଲି ଲୋକ ସିନା ଜ୍ଞାନକୁ ପାଇବ । ଟାହ୍ୟକଲି ଲୋକଟିର କାଳଘରେ ଥିବ ॥ ବସାଣ ସୂତ୍ର ବାଉଳି ଶୁଣ ଦେଇ ମନ । ବୃକ୍ଷରୁ ଫଳୁଛି ଫଳ ତବ ଗୁରୁ ଚିହ୍ନ ॥ ଗୁରୁ ଭେଦ ସୂତ୍ର ଏହି ପ୍ରଣାଳୀ ଅଟଇ । ହେଉ ରଖିଥିବୁ ମନ ନ କହିବୁ କାହିଁ ॥ ସୁଜନେ ସୁଜନ ବାକ୍ୟ ଶୁଣ ଦେଇ ମନ । ଅଣ ଅକ୍ଷର ବସାଣ କାରଣ ବିଧାନ ॥



## ଅଣାକ୍ଷର ବଖାଣ

ପ୍ରଥମ ବ୍ୟୋମ ମଣ୍ଡଳ ଯନ୍ତ୍ରକୁ ଥାପିବ । ରେଫ୍ ମାତ୍ରା ଚନ୍ଦ୍ର ତାଙ୍କ ପାରୁଶରେ ଦେବ ॥ ଜଅଫଳା ଚନ୍ଦ୍ର ତାଙ୍କ ତଳକୁ ରଖିବ । ସର୍ପାକୃତି ପ୍ରାୟେ କରି ପୃଥ୍ୱୀକୁ ଥୋଇବ ॥ ଏକାର ମାତ୍ରା ବାମକୁ ଓଡ଼ଣ କରିବ । ଇକାର ବେଢ଼ଣ କରି ମସ୍ତକେ ଖଞ୍ଜିବ ॥ ଜଅଫଳାର ଊର୍ଦ୍ଧ୍ୱରେ ବିନ୍ଦୁକୁ ଥୋଇବ । ଆକାର ସ୍ୱରକୁ ନେଇ ଦକ୍ଷିଣେ ଡାକିବ ॥ ପଞ୍ଚମନ ପଞ୍ଚାମୃତ ପଞ୍ଚଅଙ୍ଗେ ଜାଣ । କି ଶୋଭା ଦିଶନ୍ତି ପ୍ରଭୁ ଶ୍ରୀବତ୍ସ ଲାଞ୍ଛନ ॥ ଅଣାକ୍ଷର ବଖାଣ ଶୁଣିଲ ମନରାଜା । ଉଜ୍ଜ୍ୱଳ ପଡ଼ଇ ରସ ଚିତ୍ତ ଭୁଲି ମଜ୍ଜା । ୧୫୦ । ଆତ୍ମାକି ଉପମା ଦିଶୁଅଛନ୍ତି ଅଚ୍ୟୁତ । ଆନନ୍ଦର ସୁଧାସିନ୍ଧୁ ରସ ଉଜ୍ଜ୍ୱଳିତ ॥ ଯେଉଁ ଜନ ଏ ରସରେ ସଦା ରସିଥାଇ । ବାଉଲ ଶ୍ୟାମସୁନ୍ଦର ଜଣାଧନ କହି ॥



## ହୃଦ୍ବ ବଖାଣ

ଶୁଣ ତୁ ବାଉଲମନ ହୃଦ୍ବ ବିଧାନ । ଏକାକ୍ଷର ବଖାଣ ଏ ଭକ୍ତ ଗଣ୍ଠିଧନ ॥ ମୂର୍ଖ ଆଗରେ ଏ ବେଦ କେବେ ନ କହିବୁ ।

କହିଲେ ଶପଥ ମୋର ଗୁରୁଦ୍ରୋହୀ ହେବୁ ॥ ମନ କର୍ଣ୍ଣ ଥୋଇ ତତ୍ତ୍ୱ ଶ୍ରବଣ କୁ କର । ଭେଦାଇ ଭେଦିଲେ ହେବୁ ଅଜର ଅମର । ୧୫୫ । ଦ୍ୱିଷ୍ଟୟୁ ଚନ୍ଦ୍ରରେ ବଦ୍ୟା ଗୁରୁଙ୍କୁ ଖଞ୍ଜିବୁ । ଦୋମୁହାଁ ସର୍ପାକୃତ ପ୍ରାସ୍ପେକ ଯେ କରିବୁ ॥ ପିତା ଗୁରୁଙ୍କୁ ବାମରେ ଆନନ୍ଦେ ଖଞ୍ଜାଅ । ବାୟୁକୁ ନେଇଣ ମନ ତାଙ୍କ ଅଙ୍ଗେ ଦିଅ ॥ ହରି ବୋଲି ଯେଉଁ ନାମ ହେଜୁ କରିଥିବୁ । ଆକାଶର ବିନ୍ଦୁ ନେଇ ଆକାଶରେ ଦେବୁ ॥ ହରୌ ହରଃ ଅର୍ଦ୍ଧବିନ୍ଦୁ ବେନି ପକ୍ଷୀ ଜାଣ । କପୋତ କପୋଣ୍ଡି ରବେ କରନ୍ତି ପ୍ରୟାଣ ॥ ସପତ ସ୍ୱର ନାଦ ତହିଁରୁ ଉତ୍ପୁଜିଲା । ଗୋପାଙ୍ଗନା ମାନଙ୍କର ହୃଦକୁ ଜାଳିଲା ।୧୬୦। ତାହାଙ୍କର ନାମଟି ହରିଦ ଏକାକ୍ଷର । ସପ୍ତ ଆଭରଣ ହୋଇ ଜାବର ସଞ୍ଚାର ॥ ଗୁରୁ ପ୍ରଣାଳୀରେ ଏହୁ ହରିଦ ଅଟଇ । ହେଜୁ ରଖିଥିବୁ ମନ ନ କହିବୁ କାହିଁ ॥ କଳଙ୍କୀ ଖେଳରେ ଏହି ଅଟଇ ବନ୍ଧନ । ଅଣୁମାତ୍ର ନ ଗୁଡ଼ି ରସାଇଥିବୁ ମନ ॥ ଏହାର ଭାବ ନ ଜାଣି ଯେ ଶିଷ୍ୟ କରଇ । ଚୌରାଅଶୀ ନରକରେ ବନ୍ଧନ ଅଟଇ ॥ ବାଉଳି ଶ୍ୟାମସୁନ୍ଦର ହରିଦ ଗୁମ୍ଫାରେ । ପାଗଳ ହୋଇ ରହିଛି ହରିଦ ଖେଳରେ । ୧୬୫ । ଭୁମ୍ଭ ହୃଦୟା ହେବାରୁ କହିଦେଲି କଥା । ବନମାଳତି ପରାୟେ ହୋଇଥିଲି ବୃଥା ॥ ଯାହା କରି କରାଉଛ ଘଟ ପଞ୍ଜରରେ । ଡର ନାହିଁ ସାମନ୍ତ ମୋ ଥିବାରୁ ପାଶରେ ॥ ଭକ୍ତ ରଜ ମୋର ଆଶା ଜନମେ ଜନମେ । ଏହି ଭିକ୍ଷା ମୋ ମାଗୁଣୀ ଆହେ ବୁଦ୍ଧଜନେ ॥

—*—

—ଚୈତନ୍ୟ ଉବାଚ—

ଶୁଣ ତୁ ବାଉଳମନ ଅପୂର୍ବ କାହାଣୀ । ବସନ୍ତ ଓଁକାରରେ ବାହାର ଚକ୍ରପାଣି ॥ ପ୍ରଥମରେ ଦୁଇ କାହାଣୀକୁ ମନଦେବ । ଏକାର ମାତ୍ରାକୁ ବାମେ ଟେକାଇ ରଖିବ । ୧୭୦ । ବ୍ୟୋମ ଚନ୍ଦ୍ର ନେଇକରି ତାର ଊର୍ଦ୍ଧ୍ବେ ଦେବ । ତଦୁର୍ଦ୍ଧ୍ବେ ଶ୍ରୀକୃଷ୍ଣଙ୍କୁ ନେଇଣ ବସାଇବ ॥



ଦୁଖୀଙ୍କ ଗୃହେ ଶ୍ରୀକୃଷ୍ଣ କୂଟ ଭିଆଇଲେ । ଗୋଗୋପ୍ଟ ଜଗି ଅଛନ୍ତି ରାଧିକା ଆକୁଳେ ॥ ଦୁଖୀଙ୍କି ଚହିଲେ ଚୋର ଫିଟିଯିବ ଆପ । ଧ୍ୟାନଘରେ ଦେଖିବୁ ତୁ ବାସୁଦେବ ରୂପ ॥ ଦୁଖୀଙ୍କି ଧରିଲେ ଚୋର ସର୍ବଦେବ ଜସ୍ପ । ଅମୃତ ବଚନ କହି ସମର୍ପାଅ ଦେହ । ନବଭକ୍ତିରୁ ସାର ପାରିଲେ ଭକ୍ତିକର ॥ ସର୍ପର ଆହାର ଯେହୁ ତା ସଙ୍ଗେ ବାହାର । ୧୭୫ । ଅଣଆଣ ହୋଇବାରୁ ଭେଦାଭେଦ କର୍ମ । ପରସ୍ପେ

ଅହିଂସା ହିଂସା କିଛି ନରଖିଲ ॥ ପ୍ରଣବ ଦଶକୁ ନେଇ ଗୃଢ଼ବେଦେ ଭର । ଚଉଷଠିରେ ରାଧାଙ୍କ କୋଳରେ ଶ୍ରୀଧର ॥ କି ଶୋଭା ଦିଶନ୍ତି ସେହୁ ଯାମଳ ମୂରତି । ନିତ୍ୟଙ୍କୀ ଛନ୍ଦେଣ ବାନ୍ଧ ମନୁ ଗୁଡ଼ି ଭ୍ରାନ୍ତି ॥ ରାଧାମାଧବ ମିଳନ ଦେଖିବ ଏ ଆଖି । ବାଉଳମନ ଯାଇଣ ବାୟୁରେ ଖେଳୁଛି ॥ ନିତ୍ୟ ବସାଣ ମନ ଶୁଣି ହେଲି ତୋଷ । ନମୋଃ ନମୋଃ ଗୁରୁନାମ ଜାନକୀ ବିଳାସ ॥ ତୋହର କହନ୍ତେ ଗୀତା ଲେଖିଲି ଏ ରସ । ଶୁଦ୍ଧ ଶୁଦ୍ଧ ଥିଲେ ନାଥ ବୋଧନ୍ତୁ ଦୂଷ ॥ ବଦୂଷ ବାକ୍ୟଟି ସଦା ଅମୃତ ଅଟଇ । ଘନ ଦୁଃଖୀ କାଙ୍ଗାଳକୁ ମାର୍ଜ୍ଜନ୍ତୁ ଗୋସାଇଁ ॥ ସପତାଙ୍ଗ ଚନ୍ଦ୍ର ସୂର୍ଯ୍ୟ ଗତାଗତ ଖେଳ । ନିତ୍ୟ ବିଧାନ ଆଦ୍ୟ ଶୁଣିଲି ସକଳ ॥ ଗତାନ୍ତ ଗତପାଦାନ୍ତ ଅଷ୍ଟାଙ୍ଗ କାହାଣୀ ଆବର ଏ ସାତବାର ଭେଦାଇଲ ପୁଣି ॥ ଆବର ଜୀବର ମନେ ଅଛଇ ସଂଶୟ । ପ୍ରକାଶ କରନ୍ତୁ ପ୍ରଭୁ ନ ରଖି ସନ୍ଦେହ ।୧୮୫। ପଙ୍କଜବଦାକ୍ଷ ହରି ତୋ ଲୀଳା ସାଗର । ବର୍ଣ୍ଣିବାକୁ କ୍ଷମ କାର ଅନନ୍ତ ସୁନ୍ଦର ॥ ଅନନ୍ତ କହିବାରୁ ଅନନ୍ତ ନାମ ବୋଲୁ । ଅନନ୍ତେ ଶୟନ ହୋଇ ଅନନ୍ତ ହୋଇଲୁ ॥ ଭକତ ଆତୁର କଥା କର୍ଣ୍ଣେ ନ ଶୁଣୁଛ । ବୌଦ୍ଧରୂପ ହୋଇ ବନ୍ଧୁ ଉଦ୍ଦେ ଲୁକ୍କ କିର୍ଣ୍ଣି ଛ ॥ ଚୌଷଠି ଭୋଗ ଖାଇଣ ହୋଇଅଛ ହେଳ । ଚୌଷଠି ଭୋଗ ଖାଇବା ହେଲାଣି ତୋ ବେଳ ॥ ଶ୍ରୀକଳଶା ହେବାରୁ ଚକ୍ଷୁ ଲୁଚୁଛି ପ୍ରସ୍ଥ । ଶ୍ରୀକଳଶା ଫୁଟିଲେ ଚକ୍ଷୁ ପୁଣି ଥୟ ହୁଏ । ୧୯୦ । ଯୁଗକୁ ଯୁଗ ତୋହର ଖେଳ ଲାଗିଅଛି । ଦୈତ୍ୟେ ଉପଦ୍ରବ କଲେ କଲ୍କି ଶିଖି ବହି ॥ ଭାରତେ ଭାରତ ଖେଳ ସଦା ତୋର ଥାଇ । ଭାରତ ତ ଥିଲେ ଖେଳ ନ ଖେଳିବେ କେହି ॥ ଶରୀର ଭାରତ ମଧ୍ୟେ ଖେଳ ଲଗାଇଛୁ । ଜୀବ ପ୍ରକୃତି ମଧ୍ୟରେ ହିଂସା ଯୁଦ୍ଧ ଇଚ୍ଛୁ ॥ ନନ୍ଦଘୋଷ ରଥେ ତୁମ୍ଭେ ହେବାରୁ ସାରଥି । ହାରି ପଳାଇବ କଳି ଦେଖି ତୁମ୍ଭ

ସ୍ଥିତ ॥ ତେବ ଗୋଟି ନନ୍ଦଘୋଷ ରଥ ଯେ ଅଟଇ । ସୁମନ ଅର୍ଜୁନ
ଅଟେ ଦ୍ରୌପଦୀଙ୍କ ସାଇଁ । ୧୯୫ । ଲଗିଛି ବୈକୁଣ୍ଠେ ଯୁଦ୍ଧ ସତ୍ୟ
କଳଙ୍କର । ଅଣଗୃଣ ବାୟୁ ଯୋଗୁ ଲଗିଛି ସମର ॥ ଲୀଳା ମାନସ
ବିଗ୍ରହ ଲୀଳାକରୁ ମହୀ । ନରନାରାୟଣ ହୋଇ ଦୈତ୍ୟ ନାଶୁ ତୁହି ।
ତୋଠାରୁ ଜଗତ ଜାତ କରିଅଛୁ ମହୀ । ଜଗତ ତୋହର ବଂଶ ହେ
ଅଖିଳ ସାଇଁ ॥ ଜାତକରି ମାରୁଅଛ ଦେଖୁଛ କୌତୁକ କାହାର
କେତେକ ଦମ୍ଭ ସବୁଛ ସବୁଂକ ॥ ସଂହାର ବେଳ ଆସିଟି ହେଲଣି
ନିକଟ । ନେଇ ଗ୍ରହରେ ହୋଇବ ମାୟା ନଷ୍ଟକୃଷ୍ଟ । ୨୦୦ । ବେଢ଼
ବନ୍ଦ ଯୁକ୍ତ ହୋଲେ ଅନ୍ଧାର ହୋଇବ । ଦାଗ ବ୍ରହ୍ମ ଘୋର ଯୁଦ୍ଧ
ପ୍ରକାଶ ପାଇବ ॥ ଶରୀର କଳ ଅଟଇ ମନ ରଜା ଅଟେ । ପ୍ରକୃତି
ପ୍ରଜା ହୋଇଣ ଖେଳଇ ଏ ଘଟେ ॥ ପାଞ୍ଚମନ ଷଡ ଅରି ପଚିଶ
ପ୍ରକୃତି । ଶରୀର ଭାରତ ମଧ୍ୟେ ବିହାର କରନ୍ତି ॥ ଅମନ ରଜା
ଅଟଇ ଷଡ଼ ଅରି ସେନା । ପଚିଶ ପ୍ରକୃତି ରଥ ସୈନ୍ୟ ଅକଳନା ॥
ପର ଅପର ପ୍ରକୃତି ମିଶଇ ପଞ୍ଚାଶେ । ପଞ୍ଚାଶ୍ତୁ ଶତେ ହୋଇଣ ସେ
ହସ ପ୍ରକାଶେ । ୨୦୫ । ଶତରୁ ସହସ୍ର ହୋଇ ସୈନ୍ୟ ଅକଳନା ।
ଶରୀର ମଧରେ ସର୍ବେ କରୁଛନ୍ତି ଠଣା ॥ ଶରୀର ଭାରତରେ ବୈକୁଣ୍ଠ
ଯୁଦ୍ଧ ସ୍ଥାନ । ପୂରକ ନିବୃତ୍ତି ଅଟେ ପଞ୍ଚଭୂତ ଜାଣ ॥ କୁମ୍ଭକ
ନୈମିଷାରଣ୍ୟେ ସଅଂଯୁ ଭାଷଣ । ରେଚକ ପ୍ରବୃତ୍ତି କୁରୁ ବଂଶ ଅଟେ
ଜାଣ ॥ କୁରୁ ପାଣ୍ଡବ ସମର ଅତି ଗୁରୁତର । ଅସ୍ତ୍ର ଶସ୍ତ୍ର ଫିଙ୍ଗାଫିଙ୍ଗି
କଲେ ବଳଆର ॥ ଅତି ଦର୍ପ ହୋଇବାରୁ ଲଙ୍କା ହତ ହେଲା । ଅତି
ଦାନେ ବଳିରଜା ପାତାଳେ ଭେଦିଲା । ୨୧୦ । ଅତି ମାନ ହୋଇ-
ବାରୁ କୌରବାଦିଗଣ ॥ ଯୁଦ୍ଧେ ଅପଜୟ ହେଲେ ପାଣ୍ଡବାଗ୍ରଜେଣ ।
ପଞ୍ଚକଣ୍ଠକେ ପାଣ୍ଡବେ ହୋଇଲେ ରଜନ । ପ୍ରବୃତ୍ତି ନିବୃତ୍ତି ଖେଳ
ଶ୍ରୀକୃଷ୍ଣ ପାଳନ ॥ ପ୍ରବୃତ୍ତି ଦାନବ ଅଟେ ନିବୃତ୍ତିଟି ଦେବ । ଭାରତ
ଭୂମି ଖେଳ ଲଗାନ୍ତି ବାସୁଦେବ ॥ ଶୁଣ ଦେବଙ୍କ ମଧ୍ୟେ ନବଧା ଭକ୍ତି

ସାର । ଏ ଦେହ ଦେଲେ ସଦେହ ପାଇବ ସନ୍ତୁର ॥ ଅସତ୍ୟ ଅନ୍ୟାୟ କର୍ମ ହୋଇବଟି ଯେବେ । ସ୍ତ୍ରୀଙ୍କ ବଶତା ହୋଇଣ ମତ୍ତ ହୁଲଇବେ ॥ କେ କାହାକୁ ନ ଚହ୍ନିଣ ଗୋଳ ଆରମ୍ଭିବେ । ସ୍ତ୍ରୀଙ୍କ ହରଣ ହୋଇବ ଗ୍ରାମେ ଗ୍ରାମେ ତେବେ ॥ ମାତା ପୁତ୍ର ରମଣ ହୋଇବ ସେ କାଳରେ । ଭାଇ ଭଉଣୀ ନ ବାଣ ରତ୍ତ ଲାଳସାରେ ॥ ହାଟବାଟ କାରବାର ସ୍ତ୍ରୀଏ କରିବେ । ସ୍ୱଇଚ୍ଛାରେ ନାରୀମାନେ ବର ଖୋଜ ଯିବେ ॥ ଇଚ୍ଛାରେ ବର ବରିବେ ସେ ସମୟେ ଜାଣ । ପୁରୁଷେ ଗୃହରେ ଥିବେ ଭୃନ ହୋଇ ପୁଣ ॥ ଏପରି ରହସ୍ୟ ତନ୍ତୁ ଦେଖିବୁ ଭୁ ଯେବେ । ସଂହାର ସମୟ ହେଲା ଧର ପଦ୍ମ- ନାଭେ । ୨୨୦ । ଭକ୍ତଙ୍କ ଆତୁର ପ୍ରଭୁ ହେବେଟି ଶୁଣିବେ । ଚକ୍ର ପେଶି ନଷ୍ଟ ଶିର କାଟି ପକାଇବେ ॥ ମହୀର ଭାର ଉଶ୍ବାସ ତେବେଟି ହୋଇବ । ମହତ ଜନ ବଚନ ଆନ ନ ହୋଇବ ॥ ବ୍ୟାସ ମହାମୁନି ଏହା କହିଛନ୍ତି ପୂର୍ବେ । ମୋହର କହିବା କଥା ନାହିଁ ଭକ୍ତ ବୁଝେ॥ ବାଉଳା ଶ୍ୟାମସୁନ୍ଦର ଏ ଖତ ଦେଖିବ ଅଚ୍ୟୁତରେ ଚ୍ୟୁତ ହୋଇ ଦାସ ହୋଇଥିବ ॥ ଦୁଇ ଶତ ପଞ୍ଚବିଂଶ ପଦ୍ୟେ ଅଧ୍ୟା ଶେଷ ॥ ଶ୍ରୀ ହାଡ଼ୁ ଦାସଙ୍କ ଶିଷ୍ୟ ହଂସରେ ମାନସ । ୨୨୫ ।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ସପ୍ତାଙ୍ଗ ଅଷ୍ଟାଙ୍ଗ ନିଚିତ୍ତ କଳିଯୁଗ ବର୍ଣ୍ଣନେ ସାରସୁଧା ଗୀତା ମନ ଚୈତନ୍ୟ ସମ୍ବାଦେ ନାମ ପଞ୍ଚମ ଅଧ୍ୟାୟଃ ।

—*—

## ଷଷ୍ଠ ଅଧ୍ୟାୟ

ଆର ହନ ପ୍ରଶ୍ନତୁ ନିତ୍ୟକର୍ମ ସାର । ସିନ୍ଧ ଶଇଳେ ଶଇଳ ସୁନ୍ଦର ବିହାର ॥ ରାଧାଧର ସୁଧାପାନେ ଆନନ୍ଦ କଲ୍ଲୋଳ । ବାଉଳା ସୁନ୍ଦର ରୂପ ଦେଖି ହେଲା ଭୋଳ ॥ ମୁଖୁ ବାକ୍ୟ ନ ସ୍ଫୁରଇ ଆନନ୍ଦ କନ୍ଦରେ । ଅମନ ସହିଲୁ ସ୍ଥଳ ହେଲା ମୃଣାଳରେ ॥ ଘନ ମେଘରେ

ଅଜାମିଳ ଝଟକଲା ପରି । ବାଳ ଗୋପାଳ ରୂପରେ ସୁନ୍ଦର ମୁରାରି ॥
ଦେଖି ଆଖି ନ ରଖିଲ ବକର ସୂତ୍ରରେ । ମାୟାଧରଙ୍କର ମାୟା କେ
କହି ନ ପାରେ ।୯। ପତିତ ଉଦ୍ଧାର ନାଥ ପତିତେ ନିସ୍ତାର । କରିବା
ଉଚିତ ଏକ ଇଚ୍ଛା ବିଳାସ॥ ନିସ୍ତାର ଯଦି ହୋଇବ ତବାନନ୍ଦ କାହିଁ ।
ଏ କଥା ନଜାଣି କି ଭୂତଙ୍କ ପ୍ରାଣସାଇଁ ॥ ସେଥିକି ଜୀବର କିଛି ନ
ଥାଏ ଚ ।ତନା । ଯାହା କରିବେ ସେଥିକି ନାହିଁ ମୋ ଭାବନା॥ ନିନ୍ଦା
ଅପନିନ୍ଦା ଅଙ୍ଗେ ଭୂଷଣ ହୋଇଛି । ଭୁଲି କି ନ ଜାଣୁ ନାଥ ବାଙ୍କ
ନାହିଁ କିଛି ॥ କେତେ କେତେ ବିପଦରୁ ରଖିଛ ମାଧବ । ସାମନ୍ତ
ଥିବାରୁ ପାଖେ ଯାଉଛି ସରବ ।୧୦। ବାଉଲି ଯଦି ତୋହର ଦାସ
ହୋଇଥିବ । କୌଣସି କଥାରେ ଭୟ ନାହିଁ ହେ ମାଧବ ॥ ଦାସ ନ
ହୋଇଣ ଯଦି କହୁଛି ବଡାଇ । ଗରବ ଗଞ୍ଜନା କର ହେ ଅଖିଳ
ସାଇଁ ॥ ଗରବ ନ ସହି ନାଥ ମାଡ଼ ଖାଉଅଛି । ଶ୍ରୀବତ୍ସର ଚିହ୍ନ ଚୋଟିଁ
ହୃଦେ ବହିଅଛି ॥ ନାମ ଅଭିନ୍ନ ମୁରତି ସୁନ୍ଦର ବରନ । ଦୟା ମାୟା
ବଚନକୁ କରଇ ଦଇନ୍ୟ ॥ ମାୟାର ସଂସାରେ ଥାଇ ଦୟାର
ସାଗର । ବନ୍ଧା ହୋଇଅଛ ବନ୍ଧୁ ଭକତ ରଜ୍ଜୁର । କେ ଶୁଣିବ
କହ ବନ୍ଧୁ ଜୀବର କାହାଣୀ । ପ୍ରଭୁ ବୋଲି ଯେବେ ଉତ୍ତର ନ କହିବ
ବାଣୀ ॥ ତେଣୁ କରି ବାର ବାର ପଚାରଇ ତୋରେ । ଦାସରେ
ସୁଦୟା ଯଦି କରିଅଛ ବାରେ ॥ ସଂଶୟ ଛୁଟାଇ ଜ୍ଞାନ ଅଙ୍କୁଶକୁ
ଦିଅ । ଜ୍ଞାନ ଅଙ୍କୁଶ ଧରି ତୋ ହସ୍ତୀକି ଚଳାଅ ॥ ଏ ଘଟ ଯନ୍ତ୍ର
ମଧ୍ୟରେ ତୁମ୍ଭେ ସୂତ୍ରଧର । ଯେପରି ଉଧାର ନାଥ କରୁଛି ଜୁହାର ॥
ମୁଁ ବୋଲିବା ବାକ୍ୟ ଗୋଟି ତୋର ଭିନା କେ ନାହିଁ । ନିନ୍ଦା ପ୍ରଶଂସା
ତୋହର ମୋର କିଛି ନାହିଁ ।୧୦। କରି କରାଉଛ ଘଟ ପଞ୍ଜରରେ
ଥାଇ । ଉତ୍ସର୍ଗ କରୁଛି ଭୟ ନ ରଖି ଗୋସାଇଁ ॥ ଜୀବର ଆରତ
ସ୍ତୁତି ଶୁଣ ସ୍ତୁତିରେ । ଏ ସମୟେ ଚଇତନ୍ୟ କହନ୍ତି ସଧୀରେ ॥

## ଚୈତନ୍ୟ ଉବାଚ

କହନ୍ତି ଅନାଥ ବନ୍ଧୁ ଶୁଣ ଭୁଲମନ । କମ୍ପାଇଁ ବ୍ୟାକୁଳ
ହେଉ ଧୀର ଚିତ୍ତେ ଶୁଣ ॥ ଚେତକୁ ନେଇ ନାଦରେ ସଧୀରେ
ଥୋଇବୁ । ଚଞ୍ଚଳ ନ କରି ଆପ ଅଚଳ କରିବୁ ॥ ପୂର୍ବ ପଶ୍ଚିମ
ସୂକ୍ଷ୍ମତ ଉଦୟ ହୋଇବ । ଅଚନ୍ତାରେ ଥୋଇ ଚିନ୍ତା କର ଅନୁଭବ॥
ଯେଉଁ ଶିଶୁ ବେଦଗୋଟି ହୋଇଥିଲା ଲୋପ । ପ୍ରକାଶ ହେବାର ବେଳ
ହେଲଣି ସମୀପ ॥ ତାହା ବିସ୍ତୀର୍ଣ୍ଣ କରିଣ ବୁଝାଇ କହିବା । ସୁଧାମୃତ
ପାନକରି କର ଗୁରୁସେବା ॥ ପରମ ପୁରୁଷ ବୋଲି ଯାହାକୁ
କହନ୍ତି । ଅଖଣ୍ଡ ନିରଞ୍ଜନ ତୋ ଘଟେ ବିରାଜନ୍ତି ॥ ଅରୂପ ଅବର୍ଣ୍ଣ
ଅନାମ ସେ ତାଙ୍କ ନାମ । ତାଙ୍କର ସ୍ୱରୂପ ସୂକ୍ଷ୍ମ କାରଣେ ଆଶ୍ରମ ॥
ଅଣାକ୍ଷର ଅବ୍ୟକତ କୃଷ୍ଣ ବ୍ରହ୍ମମୟ । ମହାଶୂନ୍ୟରେ ଅଛନ୍ତି ଗୁରୁ
ଶିଖୋଦୟ ।୩୦। ଅବ୍ୟକତ ବ୍ରହ୍ମବ୍ୟକ୍ତ ସ୍ୱରୂପ ସେସନେ ।
ଜଳରେ ଯେ ଅଗ୍ନି ଛାୟା ବିକାଶଇ ଯେହ୍ନେ ॥ ତେସନକ ପରକାରେ
ବିନ୍ଦୁଛାୟା ଜାଣ । ଝିଟିକ ଶୋଭା ଦିଶିବ ଆପ ମଧ୍ୟରେଣ ॥
ଭାବରେ ଭାବକୁ ଦେଲେ ଭାସ୍କର ସଦୃଶ୍ୟ । ଉଦୟ ହୋଇବେ ପ୍ରଭୁ
ଅର୍କ କ୍ଷେତ୍ର ପାଶ ॥ ଯାଦୃଶ୍ୟ ଭାବନା କଲେ ତାଦୃଶ୍ୟ ଦେଖିବୁ ।
ଶ୍ୱେତ ପଦ୍ମ ଡୋଳା ଦେଖି ଉନ୍ମାଦ ହୋଇବୁ ॥ ଏପରି ପ୍ରଭୁଙ୍କ
କାୟା ଝିଟିକ ଦିଶିବ । ପୂର୍ବ ପଶ୍ଚିମ ମଧ୍ୟରେ କର ଅନୁଭବ ।୩୫।
ଅନ୍ତର ବାହାରେ ମନ ଦେଖିବୁ ଶୂନ୍ୟରେ । ଅନନ୍ତ ନାମ
ଯାହାଙ୍କ ଅନ୍ତ ନାହିଁ କା'ରେ ॥ କ୍ଷୁଧା, ତୃଷା, ନିଦ୍ରା, ଶ୍ରମ
ସେଠାବରେ ନାହିଁ । ଅବକାଶ ହୋଇଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥
ବ୍ରହ୍ମାଣ୍ଡ, କହନ୍ତା, ବକ୍ତା, ଶ୍ରୋତା ବୁଝିଛନ୍ତି । ପରମ ସେହାରେ
ନିତ୍ୟ ରସେ ମଜ୍ଜିଛନ୍ତି ॥ ସତ୍ୟ, ଶାନ୍ତି, ଦୟା, କ୍ଷମା, ସୁଶାନ୍ତ
ମହତ । ସୁଧର୍ମ, ସୁକୃତ, ପୁଣ୍ୟ, ବିଶ୍ୱାସ, ବ୍ୟକତ ॥ ତୋଧନ

ପାଳନ, ଆସ୍ୱାସନା ଛନ୍ତି ରହି । ଭକତ ଭାବେ ଏ ସବୁ ଖଟିଛନ୍ତି ତହିଁ ।୪୦। ଧର୍ମ, ଅର୍ଥ, କାମ, ମୋକ୍ଷ ସେବନ୍ତି ଚୌପାଶେ । ଦେବଦାନ୍ତ ଶଙ୍ଖ ଶବ୍ଦ ବାଜୁଛି ବିଶେଷେ ॥ ତାଳ ଡମ୍ବରୁ ମୃଦଙ୍ଗ ବଂଶୀ ବୀଣା ବାଦ୍ୟ । ଭସ ଯନ୍ତ୍ରରେ ଯନ୍ତ୍ରିତ ଭୂଶବ୍ଦେ ପ୍ରମୋଦ ॥ ରସ ଗନ୍ଧ ରୂପ ଶବ୍ଦ ସ୍ପରଶ କରନ୍ତି । ଦୁଆଘ ହୋଇଣ ଖଟି ନିଶାଣ ବଜାନ୍ତି ॥ ପଞ୍ଚଜନ୍ୟ ଶଙ୍ଖ ମୁଖେ ଫୁଙ୍କନ୍ତରେ ବସି । ଏକବିଂଶ ପୁର ଭେଦେ ଶବ୍ଦର ସୁରସ ॥ ବିବିଧ ବାଦ୍ୟ ଶବଦ ମଙ୍ଗଳ ମଧୁର । ଘୃତଦ୍ୱାରେ ଅଷ୍ଟ ସଖି ସଦା ସେବାକାଂକ୍ଷୀ ।୪୫। ଶରତ ପୂର୍ଣ୍ଣିମା-ଚନ୍ଦ୍ର ପରି ଶୋଭାବନ । ବିଶୁଦ୍ଧ ଅକଳଙ୍କ ତା ଅନ୍ତ ନାହିଁ ଜାଣ ॥ ଶାନ୍ତ ସୁହଂସ ପାଶରେ ସଦା ଥାନ୍ତି ରହି । ପବନ ସୂପକାର ତହିଁ ହୋଇ ଅଛଇ ॥ ବସନ କାଚଇ ଅଗ୍ନି ଜଳ ଧୌତ କରେ । ବସୁଧା ପଥ ଦେଖାଏ ବଜ୍ରନ୍ତ ଆଗରେ ॥ ବେଗ ମଣ୍ଡପ ଉପରେ ବାସ୍ତ ବାସୁଦେବ । ଜନଯୋଗ ହୋନ୍ତି ମନ ମଣ୍ଡପେ ସରବ ॥ ଭଗତ ଭାବଗ୍ରାହୀ ବାସନା ଭୋଗ ନ୍ୟନ୍ତି । ସେଠାବକୁ ମନ୍ତ୍ର ଯନ୍ତ୍ର ତନ୍ତ୍ର ଗୁହୁଁଛନ୍ତି ।୫୦। ଭକତ ପ୍ରେମ ଭାବକୁ ଗ୍ରହଣ କରନ୍ତି । ଭକ୍ତବତ୍-ସଲ୍ୟ ଧର୍ମୀ ଭାବେ ଭାବ ବଳସନ୍ତି ॥ ଭାବ ପ୍ରେମ ଯହିଁ ନାହିଁ କ ହୋଇବ ମନ୍ତ୍ର । ବନର ମାଳଞ୍ଚ ପରି ମନ୍ତ୍ର ହୁଏ ଗ୍ରସ୍ତ ॥ ଦର୍ଶନେ ଅଘନାଶନ ସ୍ପର୍ଶନେ କାରଣ । ଅଧରାଧର ପ୍ରେମରେ ଭର ଆସ୍ୱାଦନ ॥ ସେ କଥା ଶୁଣ ତୁ ମନ କହିବା ବୁଝାଇ । ପ୍ରକୃତି କି ନେଇ ବାନ୍ଧ ଇନ୍ଦ୍ରିୟେ ଜୁଟାଇ ॥ ଇନ୍ଦ୍ରିୟ ନେଇଣ ବାନ୍ଧ ମନର ଆୟତ୍ତେ । ମନକୁ ଆୟତ୍ତ କର ପବନର ସୂତ୍ରେ ।୫୫। ପବନ ଆୟତ୍ତ କର ଦୁଇ ଚକ୍ଷୁ ପର । ଧ୍ୟାନ ଧାରଣାକୁ ଧର ହୁଅ ଅଜଗର ॥ ମନ ସାରଥିରେ ବାୟୁ ଅଶ୍ୱ ନେଇ ଯୋଖ । ବାମ ଦକ୍ଷ ରଜ୍ଜୁ ଧର ସଧୀରେ ସଳଖ ॥ ଚାଲିଯିବ ଅଶ୍ୱ ଧୀରେ ଶିଶୁମୂନା ବାଟେ । ଚେତାକୁ ଗୁଡ଼ିଲେ ଝୁଣ୍ଟି ପଡିବୁ ନଘାଟେ ॥ ହଂସର ଆଶ୍ରମେ ଚେତା ନେଇ

କର ଠଣା । ସବ ଲକ୍ଷଣ ଉଚ୍ଚକେ ହୋଇବ ସେ ଜଣା ॥ ବ୍ରହ୍ମ ରନ୍ଧ୍ରେ ଗଳାଇଲେ ହୋଇବୁ ଅମର । ସାରସୁଧା ବ୍ରହ୍ମରସ ଝରୁଛି ସେଠାର । ୫୦ । ସାଧକ ହୋଇଣ ସ୍ୱର ଯନ୍ତ୍ରରେ ସାଧିବୁ । ଅନାହତ ଦ୍ୱାରଠାରେ ଷଟ ସମର୍ପିବୁ ॥ ମନ ମଧ୍ୟେ ମନ୍ତ୍ର ସ୍ଥାପୀ ମନ୍ତ୍ର ମଧ୍ୟେ ମନ । ମନ୍ତ୍ରଟି ଓଁକାର ଅଟେ ଆରେ ଭୁଲମନ ॥ ଓଁକାର ନିର୍ବୀଜ ହରେ ରାମ କୃଷ୍ଣ ଜାତ । ତାଙ୍କଠାରୁ ମହାମନ୍ତ୍ର ହୋଇଛି ସମ୍ଭୂତ ॥ ମନ ମନ୍ତ୍ର କେ ଅନନ୍ତ ଶୁଣ ଆରେ ମୁଣ୍ଡ । ସାକ୍ଷାତ ଶ୍ରୀ କୃଷ୍ଣଚନ୍ଦ୍ର ବଂଶୀ ଶୋଭହସ୍ତ । ମୂଳ ଦାର୍ଢ୍ୟ ଶ୍ୱାସଟି ଏକ ଯେବେ କରୁ । ଜାମ୍ବୁଡ଼ାଳଆ ତ୍ରିକୂଟେ କୋଳ କରପାରୁ ॥ ଇଡ଼ା ପିଙ୍ଗଳା ମଧ୍ୟେ ଶିଶୁମୁନା ଦ୍ୱାର । ବଜ୍ର କଳଣୀ ଚଢ଼ୁଛି ଦ୍ୱାଦଶ ସୂତର ॥ ଦ୍ୱାଦଶ ବୃତ୍ତ ପକାଇ ଜଗିଛି ସେଠାର । ଗୋଟିଏ ବୃତ୍ତକାଠିରେ ଫିଟିବ ସେ ପୂର ॥ ତ୍ରିକୁଟ କୂଟ ଘରରେ ଯୋଗମାୟା ବାସ । ଯୋଗମାୟାଙ୍କ ଆଦେଶେ ଖୋଲିବୁ ଦ୍ୱ ଦଶ ॥ ଚତୁଷ୍ପଦା ଗାୟତ୍ରୀ ସେ ପାବକ ହୋଇଛି । ପଞ୍ଚାମୃତରେ ତୋଷିବୁ ଯୋଗମାୟା ବହ୍ନି ॥ କୃପାମୟୀଙ୍କ କରୁଣା ନ ହୋଇବ ଯେବେ । ଗମି ନ ପାରିବୁ ରାସ ମଣ୍ଡଳର ଠାବେ । ୭୦ । ସୁପୁତ୍ର ହୋଇବୁ ଯେବେ ମାତା ଚହ୍ଲାଇବେ । ମାତା କୋଳେ ବସିଥିବୁ ଶିଶୁର ସ୍ୱଭାବେ ॥ ଭିତରେ ପଶି ଦେଖିବୁ ଆତ୍ମାରାମ ରୂପ । ପ୍ରକାଶରେ ହଜିଥିବୁ ଦେଖି ହେବୁ ତୃପ୍ତ ॥ ନିଃଶ୍ୱାସରେ ବାରବାୟୁ କରିବୁ ସଞ୍ଜମ । ତ୍ରିକୂଟର ପରକାର କର ତୁ ବାରଣ ॥ ପ୍ରଶ୍ୱାସର ସଧୀରରେ ଚେତିବୁ ମରମ । ଅକ୍ଷମାଳ ଧରିଥିବୁ ଝୁଲି ମଧ୍ୟରେଣ ॥ ଷୋଳ ନାମ ବତିଶ ଅକ୍ଷର ହୋଇଛନ୍ତି । କଳିଯୁଗରେ ଏ ମନ୍ତ୍ର ପ୍ରଚୁର ହୋଇନ୍ତି । ୭୫ । କଳୌ ମୂଳ ମନ୍ତ୍ର ଏଟି ଭଜ ରାଧ ଧନ । କଳି ଘୁଞ୍ଚି ପଳାଇବ ତାଙ୍କ ପାସେ ପୁଣ ॥ ଊର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା, ନିଃଶ୍ୱାସରେ ନେବୁ । ଶିଶୁମୁନା ଊର୍ଦ୍ଧ୍ୱେ ବଙ୍କ ନାଳରେ

ଚଷିବୁ ॥ ଚନ୍ଦ୍ର ସୂର୍ଯ୍ୟ ଚରକଣ ମିଶାଇ ଖେଳିବୁ । ସୋହଂ ହଂସୋ ଭଜନରେ ମନ ମଜ୍ଜାଇବୁ ॥ ହଂସର ସଙ୍ଗତେ କର ପଞ୍ଚସ୍ୱର ମେଳ । ତେବେ ତୋ ଘଟରୁ ମନ ପଳାଇବ କାଳ ॥ ପାଞ୍ଚ ଷଡ଼ ପଚିଶକୁ ବାହାରେ ଥୋଇବୁ । ଧାସ ପାଣି ପବନରେ ଜାଗ୍ରତେ ଚେଇବୁ ॥୮୩। ପବନକୁ ଗଣ୍ଠି କରି ପାରିବୁ ତୁ ଯେବେ । ଫାଳଟି ରହିବ କାୟା ବ୍ୟୋମ ଘର ଠାବେ ॥ ଅଧିଭୂତମାନଙ୍କର ନ ରଖିବୁ ଆଶା । ଶୋଣିତ ଗନ୍ଧେ ପଡ଼ିବୁ ଜନ୍ମୁପତି ବସା ॥ ଅଧିଯଜ୍ଞେ ମନ ଥାଇ କରମ କରିବୁ । ଚୈତନ୍ୟ ଚନ୍ଦ୍ରଙ୍କୁ ନିତ୍ୟାନନ୍ଦରେ ଭରିବୁ ॥ ଏ ଭାବରେ ସ୍ଥାୟୀ ମନଜ୍ଞାନ ଯଦି ଦେବୁ । ଅଧିଦୈବତେ ସଚେତେ ଚେତନା ରଖିବୁ ॥ ନିକାର ଧାରଣାରେ ଯେ ଆବାହନ କର । ଅ ଉ ମ ନିକ୍ଷର ଠାରେ କଳାକାନ୍ତି ଧର ।୮୪। ପ୍ରାତଃ ମଧ୍ୟାହ୍ନ ସାୟାହ୍ନ ନିକାଳ ବାରିବୁ । ବ୍ୟୋମ ମଣ୍ଡଳରେ ସ୍ନାନ ଶଉଚ ହୋଇବୁ ॥ ଅନ୍ୟାନ୍ୟ ସ୍ନାନର କଥା ମଇଳାର ଅର୍ଥେ । ଗଙ୍ଗା ଗୋଦାବରୀ ତୀର୍ଥ ପଇସା ନିମନ୍ତେ ॥ ସପ୍ତ ପରକାର ସ୍ନାନ ବେଦ ମଧ୍ୟେ ସ୍ଥିତ । କ ସ୍ନାନ କରିବୁ ମନ ଭୂମି ହେବ ଶାନ୍ତ ॥ ମାନ୍ତ୍ର, ପାର୍ଥିବ, ଆଗ୍ନେୟ, ବାୟୁବ୍ୟ ଏ ପାଞ୍ଚ । ଦିବ୍ୟ, ବାରୁଣ, ମାନସ ସପ୍ତ ମଧ୍ୟେ ଆଞ୍ଚ ॥ ମନ୍ତ୍ର, ମୃତ୍ତିକା, ଭସ୍ମ, ଗୋଧୂଳି, ରୌଦ୍ର ବୃଷ୍ଟି । ନଦୀମାନ ଏ ସାତରେ କେହୁ ପ୍ରତିପତ୍ତି ॥ ଏଥି ମଧ୍ୟରୁ ବାରୁଣୀ, ମାନ ସିକ ସ୍ନାନ । ସଦାଗ୍ରରେ ଲେଖାଅଛି ଶୁଣ ଭୂଲିମନ ॥ ମନ ଯଦି ଶୁଦ୍ଧ ନାହିଁ କୌଣସି ସ୍ନାନରେ । ଫଳ ନାହିଁ ଶୁଦ୍ଧ ନାହିଁ ବୁଝ ତୁ ସୁଧୀରେ॥ ମନ ସଞ୍ଜମ କରିଣ ଭୁଦ୍ଧି ସ୍ନାନ କର । ସବୁଠାରୁ ଶୁଦ୍ଧ ଏହି କର ବାରବାର ॥ ଚିତା କାଟି ଛପା ମାରି ବୈଷ୍ଣବ କହନ୍ତି । ସଞ୍ଜମ ଛଡା ନ ଜାଣି ମାଟି ବୋଲି ହୋନ୍ତି ॥ ନିକୂଟର ଚିତା ଗୋଟି ଭୂ ବୋଲି ପ୍ରକାଶ । ଭୂଉକୁ କହନ୍ତି ପୃଥ୍ୱୀ ବୃଦ୍ଧଙ୍କ ଆଦେଶ । ୮୫ । ଚିତା ତ କଣ୍ଠା ହୋଇଛି ସାକ୍ଷ୍ୟ ଲକ୍ଷ୍ୟ ଦେଖ । ଆଉ କ ଚିତା କାଟିବୁ

ସକଳେ ନରେଖ ॥ ଚିତାରେ ତୁ ଚିନ୍ତା କର ପରମାନନ୍ଦଙ୍କୁ । ଚିତ୍ତଗ୍ରେ ଚିନ୍ତାମଣି ଦେଖିବୁ ତାହାଙ୍କୁ । ଭୂମିର ମାଟିରେ ଯନ୍ଦ ଛୁଡ଼ିଯିବ ପାପ । ଅନ୍ୟ କରମ କାହିଁକି ହେଉନାହିଁ ଲେପ ॥ ପ୍ରତିମା ପୂଜା କରନ୍ତି ଜୀବର ବିଶ୍ରାମ । ସଂସାର ନିମନ୍ତେ ଅଧିଯଜ୍ଞର କରମ ॥ ଏ ସବୁ କାମନା କର୍ମ କରିବୁ ବିଚାର । ଗୁଣ ରୂପରୁ ଅଣ୍ଟି ତ ଜନ୍ତୁ ବଂଶୀଧର ।୧୦୦। ଗୁଣ ରୂପ ଦୁଇ ନାହିଁ ଅରୂପ ବିହାର । ଅରୂପାନନ୍ଦ କନ୍ଦରେ ସେବ ବାର ବାର ॥ ଅଣିମା ରୂପରେ ପ୍ରଭୁ ଦେବେ ଦରଶନ । ପୂର୍ଣ୍ଣ ରୂପେ ପୂର୍ଣ୍ଣବ୍ରହ୍ମ ହେବେ ସୁପ୍ରସନ୍ନ ॥ ସ୍ୱୟଂଆତ୍ମା ପରଂବ୍ରହ୍ମ ଆତ୍ମାହିଁ ଭୁବନ । ସେହି ମୁକ୍ତି ମୁକ୍ତି ସେହି ଜାଣେ ଯେଉଁ ଜନ ॥ ଅହଂ ବ୍ରହ୍ମ ଭାବନାକୁ ଯାହାର ଉଦୟ । ସେହି ଅଟେ ବଇଷ୍ଣବ ଜାଣ ତୁ ନିଶ୍ଚୟ ॥ ଯେ ଜୀବ ଚିନ୍ମୟ ମାର୍ଗେ ହୋଇଣ ନିମଗ୍ନ । ବ୍ରହ୍ମା ସ୍ୱରୂପକୁ ସେହୁ କରେ ଦରଶନ ।୧୦୫। ଏହି ଦେହ ଭୂତ ଆତ୍ମା ଦୁର୍ଗନ୍ଧ ଶରୀର । ହରି ନାମ ସୁଧାଧାର ଯାର ହୃଦାକାର ॥ ଅଙ୍ଗ ପୁଲକିତ ଯାର ହରିନାମ ଶୁଣି । ଲୋମଦ୍‌ଗମ ହୃଦମଧ୍ୟେ ଭୁବଙ୍ଗୀ ବୃହାଣୀ ॥ ସେ ଘଟରେ କୃଷ୍ଣଚନ୍ଦ୍ର ବିରାଜିତ ଛନ୍ତି । ଏ ଜ୍ଞାନ କରଇ ଯେହୁ ସେହି ତରିଯାନ୍ତି ॥ ସକଳ ଘଟରେ ପ୍ରେମାନନ୍ଦ ଲୁଳି ଯାର । ସେହି ଜନ ବଇଷ୍ଣବ ଜାଣ ଭୁଲ ବୀର ॥ ଯୋଗ ରଥରେ ଯାହାର ମନ ବଳୁଥାଇ । କୁରୁକ୍ଷେତ୍ର ଛାଡ଼ି ଧର୍ମକ୍ଷେତ୍ରେ ସେ ଗମଇ ।୧୧୦। ସଚ୍ଚିଦାନନ୍ଦ ଧାମରେ କରଇ ବିହାର । ପ୍ରକୃତ ବୈଷ୍ଣବ ସେହୁ ହେଉ କରି ଧର ॥ ଅନାହତ ଚକ୍ର କରେ ଯେ ଜନ ଗମନ । ଧ୍ୟାନ ଯୋଗେ ପ୍ରେମେ ନିତ୍ୟ କର ଦରଶନ ॥ ଅନନ୍ତ ହଂକାର ସ୍ୱପେ ଯାହାର ବିହାର । ପ୍ରସିଦ୍ଧ ବୈଷ୍ଣବ ସେହୁ ମୋର ପ୍ରିୟତର ॥ ଶ୍ରୀକୃଷ୍ଣ ସଚ୍ଚିଦାନନ୍ଦେ କରେ ଉଚ୍ଛଳିତ । କୃଷ୍ଣାନନ୍ଦେ ଯାର ଚିତ୍ତ ନିତେ ପୁଲକିତ ॥ ଅଙ୍ଗ ପୁଲକିତ ଭାବେ ଯାର ସଦାରତ । ସେ ଜନ ପ୍ରଭୁଙ୍କ ଦାସ ଜାଣ ଆରେ ସୁତ ।୧୧୫।

ସତ୍ୟ ଧର୍ମ କ୍ଷମାସ୍ତୁଞ୍ଚ ଦୟା ଶ୍ରଦ୍ଧା ତଥୈବ ଚ ।
କାମ ମୋକ୍ଷ ଚତୁଃର୍ଦ୍ଧଂ ଏତାନ ମାତୃଗର୍ଭକମ୍ ॥

ସତ୍ୟ ଧର୍ମ କ୍ଷମା ଦୟା ଶ୍ରଦ୍ଧା କାମ ମୋକ୍ଷ । ମାତା ଗର୍ଭରେ ଏ ସର୍ବ କରିଥାଇ ଲକ୍ଷ ॥ ବ୍ରହ୍ମାଣ୍ଡ ପିଣ୍ଡକୁ ଆସି ସବୁ ଭୁଲିଯାନ୍ତି ; ତେଣୁ ଏ ସକଳ ଶାସ୍ତ୍ର ଚେତନା ଅଟନ୍ତି ॥ ସକଳ ଶାସ୍ତ୍ରର ମୂଳ କରୁ ତୁ ବିଚାର ! ସତ, ଶାନ୍ତି, ଦୟା, କ୍ଷମା ମାର୍ଗ ଆଶ୍ରା କର ॥ ତୃଣ ତୁଲ୍ୟ ଏ ସଂସାର ଜାଣ ତୁ ବିଚାର । ଅଟଳ ଅଚଳ ଗିରି ପରି ନେଇ କର । ୧୧୦ । ଭୁବନ, ଚନ୍ଦ୍ର, ସୂର୍ଯ୍ୟରେ ହଂସର ପୀରତି । ଧ୍ୟାନ ଧାରଣ ରସରେ କରଅ ପ୍ରଶାନ୍ତି ॥ ଯେ ଜନ ଭୃଙ୍ଗଙ୍କ ପରି ଚକ୍ଷୁଶ୍ରବା କରେ । ସେ ମହାପୁରୁଷ ଅଟେ ବୈଷ୍ଣବେ ବିହରେ ॥ ଅନନ୍ତଙ୍କଠାରୁ ବିଶ୍ୱ ସ୍ୱରୂପ ଉଦୟ । ଆବର ଅନନ୍ତ ଅଙ୍ଗେ ଅନନ୍ତ ବିଲୟ ॥ ଅନନ୍ତ ରହସ୍ୟ ବୁଝି ପାରେ ଯେ ଭଜନ । ପ୍ରକୃତ ବୈଷ୍ଣବ ସେହୁ କର ସମ୍ବୋଧନ ॥ ଶୁଣିଲୁ ନାମ ମହିମା ଅନନ୍ତ ସାଗର । ଭୁ ନାସାରେ ନାମ ବାସ ଘଟେ ପ୍ରୀତିକର ।୧୨୫। ସବୁରି ଅଙ୍ଗରେ ଯାଇ ବିଲଗ୍ନେ ରହଇ । ହଂକାର ନିର୍ଗତ ବ୍ରହ୍ମ ଅଣୁରେ ଥାଇ ॥ ନାମର ମହିମା ଅଟେ ଅନନ୍ତ ସାଗର । ସକଳ ପାପକୁ ଛେଦ ତୀକ୍ଷ୍ଣ ଖଡ୍‌ଗଧାର ॥

ମନ ଉବାଚ

ନମସ୍ତେ ଶ୍ରୀ ଘଟସ୍ୱାମୀ ସର୍ବ ଶକ୍ତି ବେତ୍ତା । ନମସ୍ତେ ଶ୍ରୀ ଘଟ ବାଞ୍ଛି ସର୍ବ ଜ୍ଞାନ ହର୍ତ୍ତା ॥ ନମସ୍ତେ ଶ୍ରୀ ଘଟ ସଖା ପରଂ ବ୍ରହ୍ମବଶି । ଗଳାରୁ କଢ଼ାଅ ପ୍ରଭୁ କାଳଦଣ୍ଡ ଫାଶି ॥ ପ୍ରସନ୍ନ ହୋଇଣ ସ୍ୱାମୀ ହୁଅନ୍ତୁ ସଦୟ । ଘଟରୁ ଛଡ଼ାଇ ଭ୍ରାନ୍ତି ଘଟ କରି ଥୟ । ୧୩୦ । ଉପଦେଶ ଜ୍ଞାନ ଆଜ୍ଞା କର ଗୁରୁଦେବ । ସେ ବାଟ ବୁଝାଅ ଯାକେ ବୁଝି ଜ୍ଞାନ ନାବ ॥ ମୋ ଗୁରୁ ସଂଶୟ ଘଟେ ଜାତ ହୋଇଛଇ । ନାନ୍ତ

କାହୁଁ ଜାତ ହେଲ ଦଅନ୍ତୁ ବତାଇ ॥ ନାମ ରୂପ ବୋଲଣ ତ କହିଲ ବୁଝାଇ । ଅନାମ ଅରୂପ ବୋଲି ପୂର୍ବେ ଥିଲ କହି ॥ ତାହାର ରହସ୍ୟ ସବୁ ବୁଝାଇ କହିବ । ଭ୍ରାନ୍ତି ତୁଟାଇଣ କହ ଜୀବ ଥସୁ ହେବ ॥ ସପ୍ତ ପଞ୍ଚାତ୍ମିକ ବସାଣକୁ ବୁଝାଇବ । ଘନଜନ ବାନ୍ଧବ ହେ ଘନେ ଦୟା ହେବ ।

ଶ୍ଲୋକଃ

ଭୂତ ସମୀର ମନ ତତ୍ତ୍ୱଶ୍ଚ ବୀଜକଂ ।
ସ୍ୱର ଆତ୍ମା ସପ୍ତ ଜାନାନ୍ତି ସୁବୈଷ୍ଣବ ସୁଲକ୍ଷଣଂ ॥
ଆକାଶଂ ବ୍ୟାନ ଅମନଂ ଆଶ୍ରୟଂ ପ୍ଲୀଁ ବୀଜକଂ ।
ଅଂକାର ପରମ ଆତ୍ମାଞ୍ଚ ଲଲାଟେନଂ ବିରାଜତଂ ॥
ବାୟୁ ଉଦାନ ବିମନଂ ବିବେକଂ ଧ୍ଲୀଁ ବୀଜକଂ ।
ଇକାର ଜୀବଆତ୍ମାଞ୍ଚ କଣ୍ଠ ମଧ୍ୟେ ବିରାଜତଂ ॥
ଆପ ପ୍ୟାନ ସୁମନଞ୍ଚ ରୂପଞ୍ଚ କ୍ଲୀଁ ବୀଜକଂ ।
ଏକାର ଧ୍ୟାନ ଆତ୍ମାଞ୍ଚ ଚକ୍ଷୁ ମଧ୍ୟେ ବିରାଜତଂ ॥
ପୃଥ୍ୱୀ ପ୍ରାଣ ମନଶ୍ଚୈବ ନାସାଞ୍ଚ ଶ୍ଲୀଁ ବୀଜକଂ ।
ଆକାର ତତ୍ତ୍ୱ ଆତ୍ମାଞ୍ଚ ମୁଖ ମଧ୍ୟେ ବିରାଜତଂ ॥

( ସପ୍ତ ପଞ୍ଚାତ୍ମକ ବସାଣ ଚକ୍ର )

| ଭୂତ | ସମୀର | ମନ | ତତ୍ତ୍ୱ | ବୀଜ | ସ୍ୱର | ଆତ୍ମା |
|---|---|---|---|---|---|---|
| ଆକାଶ | ବ୍ୟାନ | ଅମନ | ଆଶ୍ରୟ | ପ୍ଲୀଁ | ଅଂ | ପରମାତ୍ମା |
| ବାୟୁ | ଉଦାନ | ବିମନ | ବିବେକ | ଧ୍ଲୀଁ | ଇ | ଜୀବାତ୍ମା |
| ଆପ | ପ୍ୟାନ | ସୁମନ | ରୂପ | କ୍ଲୀଁ | ଏ | ଧ୍ୟାନାତ୍ମା |
| ପୃଥ୍ୱୀ | ପ୍ରାଣ | ମନ | ନାମ | ଶ୍ଲୀଁ | ଉ | ଜ୍ଞାନାତ୍ମା |
| ତେଜ | ସମାନ | କୁମନ | ବୁଦ୍ଧି | ଷ୍ଲୀଁ | ଆ | ତତ୍ତ୍ୱାତ୍ମା |

## ଚୈତନ୍ୟ ଉବାଚ

ଶୁଣ ତୁ ଅନାଦି ସୃଷ୍ଟି ନାମ ଜନ୍ମ କଥା । ଆଦ୍ୟରୁ କହିବା ତୋତେ ନାମର ବ୍ୟବସ୍ଥା ॥ ସପ୍ତ ପଞ୍ଚାତ୍ମିକ ଚକ୍ର ଦେଖୁ ରଖିଥିବୁ। ଚୈତନ୍ୟରେ ଚେତା ଥୋଇ ଯୋଗେ ଯୋଗ ଦେବୁ ॥ ଷୋଳ ବୈକୁଣ୍ଠ ଉପରେ ଅନାମ ଭୁବନ । ସେ ଭୁବନେ ନିରାକାର କରନ୍ତି ବିଶ୍ରାମ ॥ ନିରାକାର ନାମ ସ୍ୱରାକ୍ଷର ଜାତ ହେଲା । ଶ୍ୱେତ, ହାରିଦ୍ର, ପୀତ, ଲୋହିତ ବୋଲାଇଲା ॥ ନ ଅକ୍ଷର ନିଃଶବ୍ଦେ ମୂଳ ବର୍ଣ୍ଣ ଧର । ସ କ୍ଷର ଲୋହିତ ବର୍ଣ୍ଣ ବାୟୁରେ ବିହର ।୧୪୦। କା ଅକ୍ଷରୁ ପୀତବର୍ଣ୍ଣ ତ୍ରିଗୁଣେ ସଞ୍ଚର । ର ଅକ୍ଷର ଓଁକବେଦ ଓମ୍ଁରେ ବିହର । ଓମ୍ଁ, ଧୂମ୍ଁ, ଜ୍ୟୋତି ଜ୍ୱାଳା କଳା ଜାତ ହେଲା । ଏଥିରୁ ନାନାଦି ବର୍ଣ୍ଣ ପ୍ରକାଶ ପାଇଲା ॥ ଅନାମ ଅରୂପ ହଂସ ଅନନ୍ତ ଅଲେଖ । ଅବର୍ଣ୍ଣ ଅଦୃଶ୍ୟ ବ୍ୟକ୍ତ ସ୍ଥିର ହୃଦେ ଦେଖ ॥ କଳ୍ପନାରୁ ଏକ ବିନ୍ଦୁ ବେନି ଖଣ୍ଡ ହେଲା । ଅନାଦି ପୁଂଲିଙ୍ଗ ଆଦି ସ୍ତ୍ରୀଲିଙ୍ଗ ଜନ୍ମିଲା ॥ ଜୀବ ବ୍ରହ୍ମ ପରଂବ୍ରହ୍ମ ଦୁଇ ଭାଗ ହେଲା । ବିନ୍ଦୁ ଅର୍ଦ୍ଧ ମାତା ପିତା ଭୁବନ ମୋହିଲା ।୧୪୫। ଅନାମରୁ ନାମ ହୋଇ ରୂପ ପ୍ରକାଶିଲା । ବିଶ୍ୱରେ ବିରାଟ ରୂପ ପ୍ରକାଶ ହୋଇଲା ॥ ଓଁକାର ବିରାଟ ମୁଖୁ ନାମ ଝରିଲଇ । ଅନାମରୁ ନାମ ତତ୍ତ୍ୱ କହିଲୁ ବୁଝାଇ ॥ ନାମ ଧରିଣ ଡାକନ୍ତେ ରୂପ ପ୍ରକାଶଇ । ଆବ୍ରହ୍ମ ବ୍ରହ୍ମ ପର୍ଯ୍ୟନ୍ତ ନାମ ଅଛି ଲିଭି ॥ ଉଚ୍ଚାରିତ ମାତ୍ରକରେ ନାମ ରୂପ ହେଲା । ଭାବ୍ୟ ଭାବନାରୁ ନାମ ବ୍ରହ୍ମ ସଞ୍ଚରିଲା ॥ ହ୍ଲୀଂ ଶ୍ରୀଂ କ୍ଲୀଂ ସିଦ୍ଧିରସ୍ତୁ ଜାତ ହୋଇ ॥ ଓଁକାରୁ ପଞ୍ଚାଶକ୍ଷର ଜାତ ହୋଇଛଇ ।୧୫୦। ପଞ୍ଚଶୂନ୍ୟ ଅକ୍ଷରରେ ସୃଷ୍ଟି ଚଳାଚଳ । ଜୀବ ପରମ ତା ମଧ୍ୟେ କରଥାନ୍ତି ଖେଳ ॥

ଶ୍ଳୋକଃ

ଗୁ ଶବ୍ଦଂ ଗୁଣାତୀତଂ ରୁ ଶବ୍ଦଂ ରୂପ ବର୍ଜିତଂ ।
ଗୁଣ ରୂପ ବିହୀନାୟ ତସ୍ମୈ ଶ୍ରୀଗୁରବେନମଃ ॥

ଗୁ ଅକ୍ଷର ଗୁଣ ବର୍ଜିତରୁ ରୂପ ବର୍ଜିତ ଗୁଣ ରୂପ ତାଙ୍କ ନାହିଁ ଅର୍କ୍କିଲର ମତ ॥ ଅକ୍ଷମାଳର ମହିମା ଅପ୍ରକଟ ଥାଇ । ଷପ୍ତ ମାଳ ଗୋଟି ଧରି କହନ୍ତ ବଡ଼ାଇ ॥ ଅକ୍ଷରେ ନାମ ଭଜନ ମାଳା ମଧ୍ୟେ ନାମ । ଅକ୍ଷର ଗୁଡ଼ିଲେ ନାମ ନାହିଁ ଭଜେ ଶ୍ୟାମ ॥ ପ୍ରାଣ ପ୍ରୟାଣ ସମସ୍ତ ଚେତାର ସକାଶେ । ମାଳା ଭଜନ କରନ୍ତି ଭକ୍ତିର ଉଦ୍ଦେଶ୍ୟେ । ୧୫୫ । ସଂଖ୍ୟାର ନିମନ୍ତେ ମାଳ ପ୍ରକଟ ହୋଇଛି । ମାଳାରେ ନ ଥାନ୍ତି ପ୍ରଭୁ କହୁଅଛି ତାହି ॥ କେବଳ ଭାବରେ ନନ୍ଦସୁତ ରହିଛନ୍ତି । ନବନୀତ ଚୋର କୃଷ୍ଣ ନିକଟେ ଅଛନ୍ତି ॥ ବୁଝି ହୃଦଙ୍ଗମ କର ନାମର କାରଣ । ନାମ ଅନାମର ଭେଦ ଅନୁଭବେ ଜାଣ ॥ ଆତ୍ମର ଜହ୍ନିବା ମନ ହୁଅ ଧୀର ସ୍ଥିର । ଅନାଦି ଅବ୍ୟୟ ଲୀଳା ବୃତ୍ତାନ୍ତ ସାଗର ॥ ମଲ୍ ମଲ୍ ବୋଲିଣ ଯେ ଜଗତେ ହୋଇଛନ୍ତି । କେ ମରୁଛି କେ ଜୀଉଛି ନ ଜାଣି କହନ୍ତି । ୧୬୦ । ନାମ ଥିବାରୁ ଘଟରେ ଆଦର କରନ୍ତି । ନାମ ଗୁଲିଗଲେ ମଲା ମଲା ରବ ଦ୍ୟନ୍ତି ॥ ନାମ ଯିବା ମାତ୍ରକରେ ରୂପ ପଡ଼ିଥାଇ । ମଲା ଛୁଆ ହେବ ବୋଲି ନ ଛୁଅନ୍ତି କେହି ॥ ଘଟରେ ନାମ ଥିବାରୁ ନାମ ବ୍ରହ୍ମ ହେଲା । ଅନାମ ଗୁଲିଯିବାରୁ ଦେହ ବୃଥା ହେଲା ॥ ଚୌରାଅଶି ଜାତି ଗଙ୍ଗା ହୋଇଲା ଅଚଳ । ଚେତା ଥାଉଁ ଥାଉଁ ଘଟେ ଶାନ୍ତ ନନ୍ଦବାଳ ॥ ଘଟରେ ନାମ ଅଛି ଅଘଟେ ନାମ ନାହିଁ । ସଞ୍ଜମ ଶରୀର ଗୋଟି ଅଘଟ କହଇ । ୧୬୫ । ଅନାମରୁ ନାମ ହୋଇ ନାମରୁ ଅନାମ । ନିତ୍ୟ ଶୁଦ୍ଧ ଚିଦାନନ୍ଦ ସୂକ୍ଷ୍ମରେ ବିଶ୍ରାମ ॥ ସ୍ଥୂଳଙ୍ଗରେ ଅବତାର ହୋଇନ୍ତି ଭବଗ୍ରାହୀ । ଦୈତ୍ୟ ସଂହାରି ଭକତେ କଉତୁକ ହୋଇ ॥

ଦୈତ୍ୟ ଦାନବଙ୍କ ଯୋଗୁ ଯୁଗେ ଯୁଗେ ଖେଳ । ଲଗିଅଛୁ ଲଗାଇଛୁ ହେଉଛୁ ଆକୁଳ ॥ ହସି ହସାଇ କାନ୍ଦଇ କନ୍ଦାଇ ଦେଖାଇ । ଯାହା କରୁଛନ୍ତି ସେହି କରୁଛନ୍ତି ଦେଖି ॥ ଜ୍ଞାନୀଙ୍କ ପାଇଁ ଭିନ୍ନ ଅଜ୍ଞାନୀ ପାଇଁ ଭିନ୍ନ । ରଖିଛନ୍ତି କରମ ଧରମ ତାରତମ୍ୟ । ୧୭୦ । ଜୀବର ବନ୍ଧ ମୋକ୍ଷ ଯେ ସକଳ ଶାସ୍ତ୍ରରେ । ଖୋଜଲେ ଯେ ନ ଦିଶିବ ଜାଣ ବିଜ୍ଞାନରେ ॥ କୁତ୍ସିତ କର୍ମ କଲେ ପ୍ରକୃତି ଲଭେ ବନ୍ଧ । ସୁକୃତ କର୍ମେ ପ୍ରକୃତି ଲଭେ ମୋକ୍ଷପଦ ॥ ସୁକର୍ମ ଜ୍ଞାନୀ ଅଟଇ କୁକର୍ମ ଅଜ୍ଞାନୀ । ଦେହ୍ଠୁ ଭିନ୍ନ ନାହିଁ ସବୁ ପଞ୍ଚଭୂତ ଯେଣ ॥ ଜ୍ଞାନ ପ୍ରେମ ସମାଧିରେ ହରି ହୋନ୍ତି ବଶ । ଏ ସୂତ୍ରକୁ ଯେ ବୁଝିଛି ସେ ପ୍ରଭୁଙ୍କ ଦାସ ॥ ମାଳା ତିଳକ ଲଗାଇ ଦାସ ବୋଲବନ୍ତି । ମାଳାରେ ନ ଥାନ୍ତି ହରି ତିଳକେ ନ ଥାନ୍ତି । ୧୭୫। ଜାତିରେ ନ ଥାନ୍ତି ପ୍ରଭୁ ଧନେ ନ ରହନ୍ତି । ଜାତି ଖୋଜଲେ ଭକତ ପାଇ ନ ପାରନ୍ତି ॥ ଜ୍ଞାନ ପୂର୍ଣ୍ଣ ହେବାଯାଏ ଜାତି ଖୋଜୁଥାନ୍ତି । ଜ୍ଞାନ ସମ୍ପୂର୍ଣ୍ଣ ହୋଇଲେ ନ ଖୋଜି ପାନ୍ତି ॥ ଜ୍ଞାନୀଙ୍କର ପରସ୍ପର ନାହିଁ ଭିନ୍ନମତ । ସମ ଆତ୍ମା ସବୁ ଆତ୍ମା ସମ ମଣୁଥାନ୍ତି ॥ ହରି ରସ ନ ଖାଇଣ ବୈଷ୍ଣବ ସମାନ । ଛାପା କୌପିନୀ ତିଳକେ ବଳାଇନ୍ତି ମନ ॥ ଶାସ୍ତ୍ର ପୁରାଣ ଦେଖାଇ ଭକତ ବୋଲାନ୍ତି ॥ ଦେଖାଇଲେ କି ତରିବେ ଶେଷରେ ଦୁର୍ଗତି । ୧୮୦ । ସଂସାରେ ସଂସାରୀ ଦେଖି ମାଳା ତିଳକକୁ ॥ ଲଗାଇ ଭୂଷିତ ହୋନ୍ତି କହି ବଡ଼ିମାକୁ ॥ ନାମ ଚିହ୍ନି ଭଜିଥିଲେ ଧ୍ରୁବ ପ୍ରହ୍ଲାଦ ॥ ଅକ୍ରୂର, ଉଦ୍ଧବ ହନୁ ଭୂଷଣ୍ଡି ମାର୍କଣ୍ଡ । ଚିହ୍ନି ଥିବାରୁ ନାମକୁ ନାମ କଲେ ଖ୍ୟାତ । ଛଟା ତିଳକେ ନ ଥାନ୍ତି ଭବରେ ବାଶତ ॥ ଶୁଣିଲୁ ନାମର ତତ୍ତ୍ୱ ମନ ବଣ୍ଡିଧାଶି । ଆତ୍ମାକୁ ସ୍ଥିର କରଣ ଶୁଣ ସୁଧାବାଣୀ ॥ ଖୁଣିଣ ଚୈତନ୍ୟ ସ୍ରୋତ ତରଙ୍ଗର ଲୀଳା । ଘଟକୁ ଲେଟାଇ କୃତ କୃତ୍ୟରେ କର୍ମିଲା । ୧୮୫। ଶୁଣିଲୁ ବାଉଳା ମନ ଷଷ୍ଠଅଧ୍ୟା କଥା । ସପ୍ତମ ଅଧ୍ୟାରେ ତୋର ବଳ ଅନ୍ତ ଶ୍ରୋତା ॥

ଷଷ୍ଠ ଅଧ୍ୟା ସାରସୁଧା ଗୀତାମୃତ ରସ । ବୃଦ୍ଧ ଜନ ସୁମଧୁରେ କରସି
ପୀୟୂଷ ॥ ପଞ୍ଚମ ବରଷେ ଖଡ଼ି ଆରମ୍ଭ କରିଛି । ଦଶମ ବରଷେ
ଗୁଣସାଗର ପଢ଼ିଛି ॥ ଚଣିକା ପଢ଼ି ଅଛଇ ବାର ଗୋଟି ଖନ୍ଦା ।
ଏତେକ ପଢ଼ି ବାଉଳା କଲା ଗୀତ ଛନ୍ଦା ॥ ସାହିତ୍ୟ ସଂସ୍କୃତ ପଦକ
ଜାଣଇ କିଛି । ଦୋଷାଦୋଷ ଥିଲେ କ୍ଷମା କରିବେ ଶ୍ରୀହରି ।୧୯୦।
ଘାନ ଦରିଦ୍ର ଦୁଃଖୀର ଯତ୍ନ ହକଅଛି । ମୋ କର୍ମ ମନ୍ଦ ଥିବାରୁ ଭ୍ରମି
ମରୁଅଛି ॥ ପିତା ମାତାଙ୍କ କୃପାରୁ ଦେଲେ ଉପଦେଶ । କର୍ଣ୍ଣଗୁରୁ
କରି କିଛି ନ ପାଇଲି ଲେଶ ॥ ଶିକ୍ଷା ଗୁରୁରେ ମୋହର ବଳିଲା
ମାନସ । ଏରୂପେ କେତେକ ଦିନ ହେଲା ଅବଶେଷ ॥ ସ୍ଥୂଳମୂର୍ତ୍ତି
ସେବାକରି ଜନ୍ମିଲା ଉଲ୍ଲାସ । ସୁଭାଗ୍ୟର ଦିନ ଆସି ହୋଇଲା
ପ୍ରବେଶ ॥ ପ୍ରେମାନନ୍ଦ ସ୍ୱରଣ୍ଡଙ୍କୁ ଶିକ୍ଷାଗୁରୁ କଲି । କୃଷ୍ଣତତ୍ତ୍ୱ ଜାଣି
ହରି ରହକୁ ପାଇଲି ।୧୦୫। ମନର ଉଲ୍ଲାସ କୃଷ୍ଣ ଭଜନରେ ମନ୍ତ୍ର ।
ଫୁଲ ମାଳାରେ ମୋ ମନ ହେଲା ପ୍ରଫୁଲ୍ଲିତ ॥ ଏପରି କେତେକ ଦିନ
ବର୍ଷ ଶେଷ ହେଲା । ହା କୃଷ୍ଣ ହା କୃଷ୍ଣ ବୋଲି ଆତ୍ମାରେ ଧାରିଲି ॥
ତାପରେ ଆତ୍ମା ଜ୍ଞାନରେ ବଳିଲା ମୋ ମନ । ଭଜନ ଗୀତା ପଢ଼ିଣ
ଭ୍ରମୁଥାଏ ପ୍ରାଣ ॥ ଅଚ୍ୟୁତାନନ୍ଦଙ୍କ ଗୀତା ସଂହିତା ପଢ଼ିଣ । ଏହା
କେହୁ ବୁଝାଇବ ଖୋଜୁଥାଏ ମନ ॥ ଅଚ୍ୟୁତାନନ୍ଦଙ୍କ ହରିବଂଶ ପଢ଼ି
ଶୁଣି । ସ୍ୱପନେ ଯୁଗଳ ମୂର୍ତ୍ତି ଉଭା ହେଲେ ପୁଣି ।୨୦୦। ସ୍ୱପନେ
କହନ୍ତି ପ୍ରଭୁ ଦେବକୀ ନନ୍ଦନ । ପାଇବୁ ଅଳପ ଦିନେ ଆତ୍ମା
ସମ୍ବନ୍ଧେଣ ॥ ଏପରି କେତେକ ଦିନ ଶେଷ ଯେ ହୋଇଲା । ଶିକ୍ଷା-
ଗୁରୁଙ୍କ କୃପାରୁ ସୁଯୋଗ ଘଟିଲା ॥ ହାଡ଼ି ଦାସ ମହାତ୍ମାଙ୍କ ଗୁଣ ଶୁଣି
କରି । ମହାଙ୍କର ଭେଟ କଲେ ସୁଦୟା ବସ୍ତୁର ॥ ଶିଘ୍ର ଶଇଳ
ଗିରିକ କରିଲି ପ୍ରୟାଣ । ପବନାସ୍ତ୍ରେ ଉଡାଇଲେ ଘଣ୍ଟ ପ୍ରମାଣ ।
ହାଡ଼ି ଦାସ ମହାତ୍ମାଙ୍କୁ ସେଠାରେ ଭେଟିଲି । ଆତ୍ମାଜ୍ଞାନ ସମ୍ବନ୍ଧରେ
କହିଲେ ବୁଝିଲି ।୨୦୫। ସେ ଆତ୍ମା ଜ୍ଞାନରେ ଘଟ ମନ ହେଲା ତୃପ୍ତ ।

ଆତ୍ମା ଜ୍ଞାନ ସମ୍ବନ୍ଧରେ ଜୀବ ହେଲା ଶାନ୍ତ ॥ ପରମାର୍ଥ ଜ୍ଞାନକୁ ଆତ୍ମାରେ ବୁଝାଇଲେ । ସେ ଭକ୍ତ ଜନ୍ମିବା ଘଟ ପ୍ରଚ୍ଛିନ୍ନ କରିଲେ ॥ ତାହାଙ୍କ ଅଚଳ କୃପାମୃତ ହୋଇବାରୁ । ଭଜନ ଗୀତା ଲେଖିଲି ଗୁରୁଙ୍କ କୃପାରୁ ॥ ଏବେ ସାରସୁଧା ଖଣ୍ଡେ ବଳାଇଛୁ ଆଶ । ମୋହର କଳ୍ପନା ନାହିଁ ଜାଣନ୍ତୁ ବହୁଷ । ଶୁଦ୍ଧାଶୁଦ୍ଧ ଥିଲେ ଭକ୍ତେ ସାଧନ୍ତୁ ଏ ରସ । ଅଧମ ଦାସ ଜୀବର ଜୀବ କାଳପାଶ । ୬୧୦ । ଭକତ ମଣ୍ଡଳେ ଷଷ୍ଠ ଲେଖା ଶଙ୍କର୍ଷଣ । ବାଜିଲା ଶ୍ୟାମସୁନ୍ଦର କରୁଛୁ ଜଣାଣ ॥ ଚୈତନ୍ୟ ବକ୍ତା ମନ ଶ୍ରୋତା ହୋଇ ମତ । ଭକତ ଜନଙ୍କ ପାଦେ ପଡ଼ୁଛୁ ସତତ ॥ ଭକ୍ତ ଭଗବାନ ଦୁହେଁ ନ ହୁଅନ୍ତ ଭିନ୍ନ । ଭକ୍ତ ଭଗବାନ ଜୀବ ତନୟ ରତନ ॥ ଦୁଇଶତ ଚତୁର୍ଦ୍ଦଶେ ପଦ ଶେଷ ହେଲା । ଗାନ ଅଗ୍ରତା ଶ୍ୟାମର ସ୍ୱାମୀ ନନ୍ଦବଳା ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ସପ୍ତାଙ୍ଗ
ଚନ୍ଦ୍ର ସୂର୍ଯ୍ୟ ଗତାଗତ ନାମ ଅନାମ ଚୈତନ୍ୟ ସମ୍ବାଦେ
ଶ୍ରୀ ସାରସୁଧା ଗୀତା ନାମୋ ଷଷ୍ଠ ଅଧ୍ୟାୟଃ ।

—*—

## ସପ୍ତମ ଅଧ୍ୟାୟ

ମନ ଉବାଚ

ନମୋଃ ମୁକୁନ୍ଦ ମୁରାରି କମଳା ବିଳାସ । ପାଦପଦ୍ମ ସେବା ଦେଇ ଦାସେ କର ତୋଷ ॥ ଜୟ ହେ ଶ୍ରୀ କୃଷ୍ଣଚନ୍ଦ୍ର ଜଗତ ତାରଣ । ଅରକ୍ଷ ପକ୍ଷପାତ ଯେ କାରଣ ରକ୍ଷଣ ॥ ଜୟ ହେ ଶ୍ରୀକୃଷ୍ଣଚନ୍ଦ୍ର ଧରଣୀ କଷଣ । ଦେଖିଣ ବରାହ ରୂପେ କଲ ଉଦ୍ଧାରଣ ॥ ଜୟ ହେ ଶ୍ରୀକୃଷ୍ଣଚନ୍ଦ୍ର ଆର୍ତ୍ତେ ଗୋପଗଣ । ଜଣାନ୍ତେ ମନ୍ଦରକୁ ଯେ ଧଇଲ ଆପଣ ॥ ଅଜାମିଳ ଦ୍ୱିଜବର ନାମ ଉଚ୍ଚାରଣ । କରନ୍ତେ ସେ ପଠାଇଲ ସ୍ୱର୍ଗରେ ତକ୍ଷଣ ॥ ଜୟ ଜୟ ରାମ ରଘୁବଂଶର ତିଳକ । ଦାନତାରେ ଅନୁକମ୍ପା କରନ୍ତୁ କଥିତ ॥ ଷଷ୍ଠ ଅଧ୍ୟା କଷ୍ଟକର ସମାଧି

ହୋଇଲ । ସପ୍ତମ ଅଧ୍ୟାର କଥା ଗୁପତ ରଖିଲ ॥ ସପତ ଅଙ୍ଗର କଥା ସପତ ଅଧ୍ୟାରେ । ପ୍ରକାଶ କରନ୍ତୁ ଯେବେ ଦୟାଅଛ ମୋରେ । ଦତ୍ତ କରଥିଲ ପ୍ରଭୁ ଦୟାନିଧି ହୋଇ । ଦତ୍ତାପହରଣ କଲେ ନନ୍ଦା ହୋଇବଇଁ ।୧୦। ଦେଇଥିଲ ବୋଲି ନେଲ ବୋଲିବେ ଜଗତେ ॥ ହେ କଥାକୁ ଭୟ ଏବେ ଲଗୁଅଛି ମୋତେ । ପତିତପାବନ ବୋଲି କେ ବୋଲିବ ନାହିଁ । ଭକତ ହିତରେ ବଡ ବ୍ରହ୍ମାଣ୍ଡ ଗୋସାଇଁ ॥ ଭକତ ଘବରେ ବଡ ଜଗତେ ବୋଲନ୍ତି । ଭକ୍ତ ହିତ କରୁଥାଅ ଭକ୍ତେ ତୋ ପୀରତି ॥ ଭକତ ଘବରେ ସ୍ୱାମୀ ସମସ୍ତ ତୋ ନାହିଁ । ଅସମୟେ ରକ୍ଷାଅଛ ଠୂଳ ରୂପ ହୋଇ ॥ କମଳ ଲୋଚନ ବୋଲି ବୋଲନ୍ତି ଜଗତେ । କମଳ କେଶର ମଧ୍ୟେ ଖେଳୁ ଅବିରତେ ।୧୫। ସେ ରହସ୍ୟ ଖେଳ ବାଉଳକୁ ଚେତାଇବ । ପାଦପଦ୍ମ ବାନ୍ଧି ନିକାଳରେ ଭୋଗ ଦେବ ॥

## ଚୈତନ୍ୟ ଉବାଚ

କହନ୍ତି ଅନାଦି ଜନ୍ମ ଶୁଣ ମନ ରାଜା । ସପ୍ତମ ଅଧ୍ୟା ସପ୍ତାଙ୍ଗେ ବୁଝାଇ କହିବା ॥ କଲ୍ଲୋଳର ସୁଧାଧାର ଗଳି ଆସୁଅଛି । ଅନାହତ ଦ୍ୱାରେ ଆଦିଶକ୍ତି ଠାକଅଛି ॥ ଅଥର୍ବ ବଜ୍ର କଳଣୀ ଗାତରେ ପଡ଼ଣ । ବାରଛନ୍ଦ କୋଳପରେ ଛନ୍ଦାଣି ବାନ୍ଧିଛି ॥ ବାରଛନ୍ଦ କାଠିକ ସୁମନ ଗ୍ରହକାଠି । ଗ୍ରହକାଠିକ ଚଢ଼ିଲେ ଭୂଆସିବ ହଟି । ୨୦ । ଅମଳ ଖାଇଣ ମୂଷା ଲୁଚିଛି ଗାତରେ । ବଘଡ଼ି ଚଣ୍ଟି ଛପିବ ବୋଲି ଆଶା କରେ ॥ ବଘଡ଼ିକ ଛାଡ଼ିବାରୁ ଅମଳ ଖାଇଲା । ଅମଳ ଖାଇବା ଦେଖି ବଘଡ଼ି ପଳାଇଲ ॥ ମୂଷା ମାର୍ଜ୍ଜାରର ରହସ୍ୟ ଶୁଣିଲଟି ମନ । ଗଜ କୁମ୍ଭୀର ରହସ୍ୟ ସେହିପରି ଜାଣ ॥ ଭୁଜଙ୍ଗ ଭେକର ଖେଳ ଲାଗିଛି ସେଠାଇଁ । ଏପରି କେତେ କୌତୁକ କେତେ କହିବଇଁ ॥ ସବ ଉପାସନା ଠାରୁ ଆତ୍ମଜ୍ଞାନ ଶ୍ରେଷ୍ଠ ମହାତ୍ମା ହବ ଭୂତାତ୍ମା ଭିନ୍ନ ନାହିଁ ଦେଖେ । ୨୫ ।

### ଶ୍ଲୋକଃ

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।
ନୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ॥

ଶୁଣ ତୁ ଅବୋଧ ମନ କର୍ଣ୍ଣେ ଦିଅ ଲୟ । ପଚାଶ ସମୀତ-
ଠାରେ ନ କରିବୁ ଭୟ ॥ ତେଜ ପୃଥ୍ୱୀ ଆପ ବାୟୁ ଆବର
ଆକାଶ । ପଞ୍ଚଭୂତ ଯୋଗକରି ଏ ଦେହ ପ୍ରକାଶ ॥ ସକଳ ଘଟଟି
ପଞ୍ଚଭୂତରେ ଗଠିତ । ପଚାଶ ଗୋଟି ଅକ୍ଷର ନିକୂଟେ ବେଷ୍ଟିତ ॥
ଅଣଚାଶ ଖଣ୍ଡ ହୋଇ ଜଗତେ ବ୍ୟାପିଲା । ଅକ୍ଷମାଳ ଗୋଟି ସେହି
ଜାଣିବୁ ବାଉଳା ॥ ଶାସ୍ତ୍ରରେ ନ ହୁଇ ଛିନ୍ନ ଅବ୍ୟକ୍ତ ସ୍ୱରୂପ ।
ପବନରେ ନ ଶୁଖଇ ଅଚ୍ଛେଦ୍ୟ ତା ରୂପ । ୩୦ । ଜଳରେ ଭିଦା
ନୁହଇ ଜଳଶାୟୀ ରୂପ । ଅଗ୍ନିରେ ନୁହେଁ ଦହନ ତପ୍ତସ୍ୱର୍ଣ୍ଣ ଦୀପ୍ତ ॥
ସର୍ବବ୍ୟାପୀ ନିତ୍ୟ ସ୍ଥିର ଅଚଳ ଅଚର । ଅବ୍ୟକ୍ତ ଅଚିନ୍ତ୍ୟ ଜାଣ
ତିମ୍ଭ ପରକାର ॥ ଓଁକାର ବୋଲଣ ଯେହୁ ଚେତାରେ ଚହ୍ନିଛୁ ।
ଚେତା ଘରେ ହଂସ ରହି ହୁଙ୍କାର କରୁଛି ॥ ଏହି ତିନ ତ୍ରିକୁଟି
ବ୍ରହ୍ମାଣ୍ଡ ଯୋଡିଛି । ବନର ମାଳତୀ ପରି ଅପ୍ରତିଷ୍ଠା ଅଛି ॥ ସୁ
ସୂତ୍ରିକ ଲଗାଇଲେ ପ୍ରତିଷ୍ଠା ହୋଇବ । ଦୋମୁହାଁ ସର୍ପକୁ ନେଇ
ବ୍ୟୋମେ ବନ୍ଧାଇବ । ୩୫ । ଭକତେ ଜାଣନ୍ତି ତାର ପ୍ରତିଷ୍ଠା
କାରଣ । ହଂସ ସଙ୍ଗେ ନିକାଳରେ କରନ୍ତି କୀର୍ତ୍ତନ ॥ ସୁଜନ
ଲୋକରେ ବାସ କରିଥାନ୍ତି ମାଧ । ସ୍ୱପନ ବ୍ରାହ୍ମଣ ତାଙ୍କ ନାହିଁ ଜାତି
ଗୋଧ ॥ ଅଭାବେ ବନ ମାଳତୀ ପରି ଥାନ୍ତି ରହି । ଦୁର୍ଜନ
ଲୋକଙ୍କଠାରେ କଳ ଠାକ ଥାଇ ॥ ଦେଉଳ ପ୍ରତିଷ୍ଠା ଯେତ୍ରି ଯେ ଜନ
କରିଛି । ସଫଳ ଜନମ ତାର କହି ନୋହେ କିଛି ॥ ନିର୍ଭର୍ଗୀ
ସ୍ଥାନର ରସ କହିଦେଲୁ ଜାଣି । ପିଣ୍ଡ ବ୍ରହ୍ମାଣ୍ଡରେ କଛ ସର୍ବ ଘଟେ
ସ୍ଥିତି । ୪୦ । ସର୍ବ ଭୂତେ ଏକ ଆତ୍ମା ଆତ୍ମା ଭିନ୍ନ ନାହିଁ ।

ଆତ୍ମାରେ ଆତ୍ମା ମିଳାଅ ଧର୍ମ ଦେଲୁ କହି ॥ ପରାପର ନାହିଁ ସର୍ବଘଟେ ସମାନରେ । ପୂରି ରହିଛନ୍ତି ପ୍ରଭୁ ଅନ୍ତରେ ବାହାରେ ॥

ଶ୍ଳୋକ

ନିରାକାରଂ ଚ ସୋଧାରଂ ନିର୍ମଳଂ ତନ ସର୍ବତଃ ।

ଯସ୍ୟ ସ୍ମରଣ ମାତ୍ରେଣ ବ୍ରଜଧାମଂ ସ ଗଚ୍ଛତି ॥

## ନିରାକାର ବଖାଣ

ଅଂ ଅ ବରହକ ୨୪୦୦

ହ କ ଅଲେଖ ଶୂନ୍ୟ ନିରାକାର ୨୪୦୦

ଓଁ କ୍ଲୀଁ ବ ଚି ସିଦ୍ଧଂଅ ୮୮୦୦

ଅନୁଦେସୁ ହ କ ୩୪୦୦

କ ହ ଚି ୨୩୦୦

ମନ ଉବାଚ

କୃତାଞ୍ଜଳି ହୋଇ ମନ ମନସ୍ତ ଧରି । ଜ୍ଞାନମାଳା ଧାନେ ଧରି ଅଚ୍ୟୁତ ସୁମରି ॥ ପୁରାଣ ଇନ୍ଦୁ ହେ ବନ୍ଧୁ ପଡଅଛି ସତି । ସଡ଼ିଲେ ଛାହାର ତୋର ନ ରହିବ ଜଡ଼ି ॥ ସଡ଼ି ଯିବ ଘଟ ତୋର ସରିବ ସଂସାର । ନିଶ୍ଚିମ ହୋଇବୁ ବନ୍ଧୁ ଜଗତ ମଧର । ୪୯ । ତୋର ଧନ କୃଷ୍ଣ ରଖ ନ ରଖ ହେ ସ୍ୱାମୀ । ସେଥିରେ ଆକାଂକ୍ଷା ନାହିଁ ଆହେ ବଂଶୀପାଣି ॥ ବାଉଲି ତୋହର ଯେବେ ହୋଇଛନ୍ତି ସଂସାରେ । ଘଟରେ ଥାଇ ଲୁଚିଛି ମାନସରୋବରେ ॥ ଯଦ୍ୟପି ସୁଦଣ୍ଡା ନାହିଁ ଫେଡ଼ କହ ବାରେ । ଏ ଘଟରେ କାର୍ଯ୍ୟ ନାହିଁ ଛେଦନ୍ତୁ ତଣ୍ଡରେ ॥ ପାପର ଘୋର ଦେଖିଣ ମରିବେ ରହିଛି । ତଣ୍ଡ କ ବଣ୍ଡ ହୋଇଲି କହ ଶିଶୁବନ୍ଧୁ ॥ କେତେ କେତେ ପାପୀ ଲୋକ ତାରିଛ ଗୋସାଇଁ । ଅଜାମିଳଠାରୁ ବଳକା ହୋଇଛି କି ମୁହିଁ । ୫୦ । ବଳକା ହୋଇଥିବାରୁ ଅଜାମିଳ ଠାରୁ । କରୁଣା ଉଣା କରିଛ ଆହେ ମହାମେରୁ ॥ ତେଣୁକରି ଥକା ହୋଇଅଛ ଭବଗ୍ରାହୀ । ତାରି ବା ମାର ଜୀବକୁ ହେ ଅଚଳା ସାଇଁ ।

## ଛାୟା ଦର୍ଶନ ମନ୍ତ୍ର

ଓଁ ହ୍ନ୍ଂ ଛାୟା ବ୍ରହ୍ମ ଶ୍ୱେତ ଅନନ୍ତ ଦୃଶ୍ୟତେ ନମୋଃ

## ଅବାଡ ଦର୍ଶନ ମନ୍ତ୍ର

ଓଁ ଶ୍ରୀଂ ଅବାଡ ବ୍ରହ୍ମ ଦୃଶ୍ୟତେ ନମୋଃ

## ବରାଟ ଦର୍ଶନ ମନ୍ତ୍ର

ଓଁ ହ୍ରୀଁ ଶ୍ରୀଁ କ୍ଲୀଁ ବରାଟ ବ୍ରହ୍ମ ବଳଭଦ୍ରାୟଂ ନମୋଃ

## ଧ୍ୱନି କାରଣ ମନ୍ତ୍ର

ଓଁ ହ୍ରୀଁ ହ୍ରୀଁ ଓଁ ଶ୍ରୀଁ ଶ୍ରୀଁ କ୍ଲୀଁ କ୍ଲୀଁ ଓଁ ଧ୍ରୀଁ ଧ୍ୱନି ବ୍ରହ୍ମ ନମୋଃନମୋଃ

ରକ୍ତବର୍ଣ୍ଣ ମହାକାୟଂ ରକ୍ତବର୍ଣ୍ଣ ଚଭୂଷଣଂ ।
ପଞ୍ଚବର୍ଣ୍ଣ ରୂପମ୍ ଦୃଶ୍ୟଂ ରକ୍ତବର୍ଣ୍ଣ ନମାମିହଂ ।
ଓଁ କାଳ କାମଚଣ୍ଡୀ ସ୍ୱାହା ।



ଶୂନ୍ୟ ଶୂନ୍ୟଂ ପରଂଶୂନ୍ୟ ଆଦ୍ୟ ମଧ୍ୟେ ଚରାଚରଂ ।
ଅବର୍ଣ୍ଣଞ୍ଚ ଅରୂପଞ୍ଚ ବନ୍ଦୁ ପବନ ମାନସଂ ॥
ପଞ୍ଚଆତ୍ମା କଯୁଶୂନ୍ୟ ଦ୍ୱୟଶୂନ୍ୟଂ ଶରବୀଜଂ ।
ସର୍ବବୀଜଂ ପରଂଜ୍ଞାନଂ ଯୋ ଜାନେ ପରମଂ ପଦଂ ॥
ନାସାଗ୍ରେ ନୟନଂ ସ୍ଥାପ୍ୟଂ ନିଶ୍ଚଳଂ ଆସନଂ କୁରୁ ।
ହୃଦୟଂ ନିର୍ମଳଂ କୃତ୍ୱା ଭଜ ନିତ୍ୟେ ହରିପଦଂ ।

## ଚୈତନ୍ୟ ଉବାଚ

ମନର ଆତୁର ଗୀତ ଶୁଣି ଶ୍ରୀ ଚୈତନ୍ୟ । କହାଇଁ ବ୍ୟାକୁଳ ହୋଇ ଧୀର ସ୍ଥିରେ ଶୁଣ ॥ ଶୁଣ ମନ ନ ପବର ଅଷ୍ଟାଙ୍ଗ କାହାଣୀ ॥ ଗଣ୍ଠିଆ କଥା ତୋହର ଫେଡ଼ିବା ତରୁଣି ॥ ଗୁରୁ ବେଦ ମଧ୍ୟେ ଅଷ୍ଟାଙ୍ଗ ଯୋଗ ରହିଛି । ଧ୍ୟାନ ଧାରଣା ଉପରେ ଅବନା ଖେଳୁଛି । ୫୫ । ଅବନାକୁ ବନାଇ ପାରିବୁ ଯେତେବେଳେ । ବନ୍ଧୁତାହ୍ଲାଦ ରୂପ ଖେଳିବ ତୋ କୋଳେ ॥ ଅବନା ଖେଳ ବଧାନ କାରଣ ଲକ୍ଷଣ । ଅର୍ଦ୍ଧ ଶିଶୁମୁନା ଯୋଖ ଖେଚରୀ ସୁଷେଣା॥ ଅବଧୂତଙ୍କ ବାନାକୁ ସନଖେ ରଖିବୁ । ଅର୍ଦ୍ଧ ଊର୍ଦ୍ଧ୍ୱ ମଧ୍ୟେ ମନ୍ତ୍ର ହ୍ରୀଙ୍କ ଜ୍ବଳିବୁ ॥ ଅର୍ଦ୍ଧ ଊର୍ଦ୍ଧ୍ୱ ମଧ୍ୟ ଶ୍ରେଷ୍ଠ ଚନ୍ଦ୍ର ସୂର୍ଯ୍ୟ ଯୋଗ । ଅର୍ଦ୍ଧ ଦୃଷ୍ଟିର ପାତରେ ବଡ଼ାଅ ସବାଗ ॥ ବହନ୍ତା ଗୁହାନ୍ତା ଶୁଦ୍ଧ ଚୈତନ୍ୟ ରଖିବୁ । ଅବାଇ ମଣ୍ଡଳେ ନାମ କୀର୍ତ୍ତନ ଦେଖିବୁ ।୬୦। ଦୁଗ୍ଧ ସହଚରୀ ସଙ୍ଗ କରିଥାରୁ ଯେବେ । ନକୁଞ୍ଜ କୁଞ୍ଜକୁ ଅଙ୍ଗ ବଦଳାଇ ନେବେ ॥ ଶ୍ରୀରାଧା କୃଷ୍ଣଙ୍କ ଭେଟ ସେହୁ କରାଇବେ । ତାଙ୍କ ଛଡ଼ା ଆନ କେହୁ ନେଇ ନ ପାରିବେ ॥ ରହାସେ ରସିକ ହେବୁ ରସର ମାନସେ । କମଳଲୋଚନ ଲୀଳା ଦେଖିବୁ ସୁରସେ ॥ ଅରୂପାନନ୍ଦ ଆନନ୍ଦେ କରିବୁ ଧ୍ୟାନ । ପଞ୍ଚାଶରେ ରହିଅଛି ନିଶ୍ଚଳ ଆସନ ॥ ସୋହଂ ହଂସ ନାମ ଅଜପାରେ ଅଛି ରହି । ମାଳା ଗଡ଼ୁଅଛି ଦେହୁ ଭୂମଧ୍ୟରେ ରହି । ୬୫ । କ୍ଲୀଁ କାମଦେବାୟ ନମୋଃ ବୋଲି ହେଉଥିବ । ପ୍ରତାପେ ଅନଳ ଦେଇ ଅଚଳ ହୋଇବ ॥ ମନ୍ତ୍ର ମୂଳ ଗୁରୁ ବାକ୍ୟ ପ୍ରସିଦ୍ଧ ଅଟଇ । ପୂଜା ମୂଳ ଗୁରୁ ପାଦେ ଷଡ ଅର୍ଘ୍ୟ ଦେଇ ॥ ମୋକ୍ଷ ମୂଳ ଗୁରୁ କୃପା କହିଲଇଟି ତୋତେ । ଧ୍ୟାନ ମୂଳ ଗୁରୁମୂର୍ତ୍ତି ଚିନ୍ତିବୁ ସତତେ ॥ ଏପରି ଗୁରୁଙ୍କୁ ପୂଜା ଯେ ଜାଣି କରଇ । ସ୍ତ୍ରୀଗ ବା ପୁରୁଷ ହୋଇ କୃଷ୍ଣଭକ୍ତ ହେବ ॥ ଆତ୍ମା ସେବା ଆତ୍ମା ପୂଜା ଯେ ଜାଣି ଶନ୍ତଇ । ଶ୍ରୀଗୁରୁ

ପ୍ରସନ୍ନ ହୋନ୍ତି ଶିଷ୍ୟ ଘଟେ ରହି । ୭୦ । ଗୁରୁ ଶିଷ୍ୟ ଭିନ୍ନାଭିନ୍ନ ସେହିଠାରେ ନାହିଁ । ପାପଘର ନାହିଁ ଗୁରୁ ଶିଷ୍ୟ ଏକ ଦେହି ॥ ଗୁରୁ ଶିଷ୍ୟ ଭିନ୍ନ ନାହିଁ ଶୁଣି ହେଲୁ ତୃପ୍ତ । ଏ ରସରେ ଯେ ରସିଛି ସେ ଅଟେ ସୁପୁତ୍ର ॥ ଅଚିନ୍ତାରେ ଚିନ୍ତା ଥୋଇ ଚିନ୍ତାରେ ଅଚିନ୍ତା । ଅଛି ନାହିଁ ଦେହ ଥିବ ଜଡ଼ତ୍ୱ ବ୍ୟବସ୍ଥା ॥ ଛନ୍ଦ ଗାଳି ନିନ୍ଦାରେ ନ ହୋଇବୁଟି କ୍ଷୋଭ । ପଥର ସଦୃଶ ଶବ ଦେହ ହୋଇଯିବ ॥ ଏ ଲକ୍ଷଣମାନ ଯାର ଦେଖିବୁ ତୁ ଯେବେ । ତାଙ୍କ ପାଦେ ଲୋଟାଇବୁ ମସ୍ତକକୁ ତେବେ । ୭୫ । ତାହାଙ୍କ ଠାରେ ଭଜନ ଧ୍ୟାନ ଜ୍ଞାନ ନାହିଁ । ନିତ୍ୟ ଶୁଦ୍ଧ ଶରୀର ସେ ଚିଦାନନ୍ଦଙ୍କ ଦେହି ॥ ଅଣୁ ମାତ୍ର କୃପା ହେଲେ ମୁକତିର ବାଟ । ସେଠାବକୁ ବଇକୁଣ୍ଠ ଅଟଇ ନିକଟ ॥

## ମନ ଉବାଚ

ପୁଚ୍ଛା କରଇ ବାଉଳା ପଦେ କରି ମତି । ନମୋଃ ନମୋଃ ଗୁରୁସ୍ୱାମୀ ନମୋଃ ଭୁଦ୍ଧପତି ॥ କି ଧୂପ କି ଦୀପ ଗନ୍ଧ କି ପୁଷ୍ପ ଦେବଇ । କି ଦେବଇ ନଇବେଦ୍ୟ ପୂଜା ନ ଜାଣଇ ॥ କି ମନ୍ତ୍ରେ ଜପିବ ପ୍ରଭୁ କି ନିଷ୍ଠା କରନ୍ତି । ଭକ୍ତି ନ ଜାଣଇ ବନ୍ଧୁ କି ଭକ୍ତି ଅର୍ପିନ୍ତି । ୮୦ । ତୁମ୍ଭର ସକଳ କାର୍ଯ୍ୟ ଧ୍ୟାନ ହୋଇଅଛି । ଯାହା କରିଇଛ ପ୍ରଭୁ ତାହା ଏ କରୁଛି ॥ କେବଳ ତୁମ୍ଭର ପୂଜା ତୁମ୍ଭେ କରାଇବ । ମୋହର କରିବା କଥା ଭୁଲାଇଣ ଦେବ ॥ ବାଉଳା ଭୁଲି ହୋଇଛି ତୁମ୍ଭର ରାଜ୍ୟରେ । ସୂକ୍ଷ୍ମ ସାଧନାକୁ ମନ ଆସୁ ଯାଉ ବାରେ ॥ ସାମନ୍ତ ଶିରୋମଣି ମୋ ସକଳ ଜାଣିଛ । ଆଉ କହିବା ଭଜନ ନାହିଁ ଶିଖିବସ୍ତୁ । ଅଳପକେ ସାଧ ବୋଲି କହିଥିଲ ପରି । ଶୁଣିଲି ମାତ୍ରକେ ବୋଧ ହେଲା ଘଟ ଧରି । ୮୫ । ମୈନାକ ଶଇଳଠାରୁ ବୋଝ ହେଲା ଆସି । ସେ ବୋଝ ବୋହିବା ତୁମ୍ଭେ ଜାଣ ହୃଷିକେଶୀ ॥ ଏତେ ପରମାଣେ ସ୍ୱାମୀ କହିଲ ବୁଝାଇ । କାହିଁ

ନ ରହିଲା ଚିତ୍ତ ମମ ପ୍ରାଣସାଇଁ ॥ ଅଳପ ସୂକ୍ଷ୍ମ ସାଧନା ବସ୍ତୁ ହୋଇଥିବ । ସଦା ସର୍ବଦା ଚିତ୍ତା ସେବା କର ଦିନ ଯିବ ॥ ବଳେ ଆକର୍ଷଣ କରୁଥିବ କୃଷ୍ଣ ନାମ । ଗୁଡ଼ିଲେ ଚେତାଇ ଦେବ ଦୁ ରୁଷଭ୍ଭମ ॥ ଆନନ୍ଦ ଅଶ୍ରୁ ପାତେଣ ପଡ଼ଅଛୁ ସତି । ବୁଝାଇ କହନ୍ତୁ ଗୋପୀନାଥ ମାଧୁ ଏଡ଼ି । ୯୦ ।

ଚୈତନ୍ୟ ଉବାଚ

ଜୀବର ଆରତ ଶୁଣି ଚଇତନ୍ୟ ଚନ୍ଦ୍ର । ଶୁଣ ତୁ ବାଉଳ ମନ ଭକ୍ତକୂଳ ଇନ୍ଦ୍ର ॥

ଶ୍ଳୋକଃ

ସତ୍ତ୍ୱଗୁଣ ମୂଳଧୃତ୍ୱା କାର୍ତ୍ତି ବିସ୍ତୀର୍ଣ୍ଣ ସଖା ।
ମଧୁର ବଚନଂ ପତ୍ର ଜ୍ଞାନଂ ସୁଧାପ୍ତି ପୁଷ୍ପଂ ॥
ସୁକୃତଂ ଫଳତ୍ତ୍ୱମେୟାଂ ଶୀଳସନ୍ତୁଷ୍ଟ ଛାୟାଂ ।
କଳିଯୁଗ ମଧ୍ୟଗତା ବିଷ୍ଣୁ ବୃକ୍ଷ ନବଣାଂ ॥

ଏ ଘଟ ଅଟଇ ମନ ବିଷ୍ଣୁ ବୃକ୍ଷ ତୁଲ୍ୟ । ଓଲଟି ରହିଛି ବୃକ୍ଷ କର ସମତୁଲ ॥ ଅହାକୃତ ବୀଜ ଗୋଟି ଦୁଇଫାଳ ହେଲା । ଅବ୍ୟକ୍ତରୁ ବ୍ୟକ୍ତ ହୋଇ ପ୍ରେମ ଉଚ୍ଛୁଳିଲା ॥ ଅଉମର୍ଶୀ ବର୍ଣ୍ଣ ହୋଇ ଓଁ କାର ହୋଇଲା । ଓଁକାର ସ୍ୱରବ୍ୟଞ୍ଜନ ଅଣଚ୍ଛଶ ହେଲା ॥ ସତଗୁଣ ମୂଳ ଅଟେ ଚିତ୍ତେ ଚେତାକର । ଚ୍ଛର ବେଦ ଚ୍ଛର ଶାଖା ହସ୍ତ ପାଦ ତୋର । ୯୫ । ସତ, ଶାନ୍ତ, ଦୟା, କ୍ଷମା କାର୍ତ୍ତି ଅଟେ ତୋର । ମଧୁର ବଚନ ପତ୍ର ସତ୍ୟ ଗୋଟି ଧର ॥ ସୁଜ୍ଞାନ ପୁଷ୍ପ ଅଟଇ ସନ୍ତୁଷ୍ଟି ଛାୟା । ଏହି ଅଟେ ବିଷ୍ଣୁ ବୃକ୍ଷ ଲୟାଙ୍ଗରେ ଚ୍ଛହିଁ । ॥ ସମୟାସମୟ ଜାଣି ଜଳ ଦେଉଥିବୁ । ନୋହିଲେ ବୃକ୍ଷଟି ଝିର କଡ଼ା ହେବ ବାବୁ ॥ ବୃକ୍ଷରେ ସମାନ ବେଳେ ଯେବେ ପାଣି ଦେବୁ । ଅଙ୍କୁର ଉଠିବ ବୃକ୍ଷ ଯୋଗୀନ୍ଦ୍ର ହୋଇବୁ ॥

ନିତ୍ୟ ସ୍ୱହାସ ବସାଣ—ଶ୍ଳୋକଃ
ପ୍ରେମରୂପା—ତ୍ରିହା ମଥୁର କୃଷ୍ଣ
ଗୋପ—୦ ୦ ୦ ସ୍ୱା ସ୍ୱଧା



ବୃନ୍ଦାବନ କୃଷ୍ଣ—ତ୍ରି—ବୃନ୍ଦାବଣି
କ୍ଲୀଁ

ଶ୍ରବଣ, କୀର୍ତ୍ତନ, ସ୍ମରଣ, ସେବା, ପୂଜା ବର୍ଣ୍ଣନା
ଦାସ୍ୟ, ସଖା ଆତ୍ମନିବେଦନ
ଓଁ ଶ୍ରୀଁ କ୍ଲୀଁ ପରମହଂସ ନଂ ଙ୍ଗ ପ୍ରଶ୍ନେତସ୍ୟାତ୍
ନବଧା ଭକ୍ତି ମଧ୍ୟେ ଶ୍ରୀନାମ ସଂକୀର୍ତ୍ତନଂପରଂ
ନାମସଂକୀର୍ତ୍ତନାଦ୍ ବ୍ରହ୍ମଜ୍ଞାନଂ ଲଭଂ ଭବେଦ୍ ଧ୍ରୁବଂ
ବିନା କୃପାମୟୀ ଆଜ୍ଞା ନଗମ୍ୟ ରସମଣ୍ଡଳଂ ।
ନଶୃଣୋମି ନଚ ଦୃଶ୍ୟ ଶବ୍ଦବ୍ରହ୍ମ ସ୍ୱଜାଧ୍ୱମା ।

ତିନି ତିହ୍ନଡ଼ରେ ଅଛୁ ଗ୍ରାମର ଦେବଣି । ତାଙ୍କୁ ସେବା କଲେ ତୋର ଫିଟିବ ଦୁର୍ଗତି । ୧୦୦ । ଭଜନ ଲାଗିଛି ସେଠାବରେ ଅହୋରାତ୍ର । ତୁ କସ ଭଜକୁ ମନ ନାଅ ଚେତା ସ୍ରୋତ ॥ ମନରେ ମନ୍ତ୍ର ଚେତ ନାମରେ ଥିବ ଚେତ । ଅଜପା ମନ୍ତ୍ର ମନ୍ତ୍ରିବୁ ନ ହଲିବ ଦନ୍ତ ।

ମନର ସ୍ତୁତି

ନମସ୍ତେ ଅପର୍ଣ୍ଣା ଦେବୀ ଆଦ୍ୟା ଅବତାର । ଜଗତର ମାତା ଭୂମି ତୋର ଖେଳଘର ॥ ସ୍ୱର୍ଣ୍ଣବର୍ଣ୍ଣ ଅଙ୍ଗ ତୋର କେ ଦେବ ଉପମା । ଅକର୍ମ କର୍ମଦାୟିନୀ ନାମ ଅନ୍ନପୂର୍ଣ୍ଣା ॥ କ ବର୍ଣ୍ଣିବ ତୋ ଚରିତ ଅକଳିତ ଗତି । ମାତୃଋଣ ସୁଝିବାକୁ ନାହିଁ ମା ଶକତି ।୧୦୫। ଆଜ୍ଞା ଦେଇଥିଲ ପର ଯୋଗୀ ହେବାପାଇଁ । ଜଗିଆ କର ରଖିଲ ଠାବ ପାଉନାହିଁ । ଦାହାରେ କଣ୍ଟୁ ବଚନ ଗୃହରେ ଜଞ୍ଜାଳ । ସହିବାର

କଷ୍ଟ ଯାଉନାହିଁ ସ୍ଥଳକୁଳ ॥ ସ୍ଥଳକୂଳରେ ମାନସ ନାହିଁ ଆଗୋ ମାତ । କେବଳ ତବ ସେବାରେ ଆଶାବନ୍ଧ ଚିତ୍ତ ॥ ଷଡ଼ରିପୁ ଘେରି ମାର ଜଞ୍ଜାଳ କରନ୍ତି । ସମ୍ଭବା ଅକ୍ଷମ ମାଗୋ କହୁଛି ମିନତି ॥ ଜନମେ ଜନମେ ଯହିଁ ଥିଲେ ଏହି ଘଟ । ତୁମ୍ଭ ସେବାରେ ଏ ଚିତ୍ତ ହେଉ ସାମରଥ । ୧୦୦ । ମନର ପ୍ରସନ୍ନତା ଜାଣନ୍ତି ବିଷ୍ଣୁପ୍ରିୟା । ସେବା ପିପାସାରୁ ରଖ ଯଦି ଅଛି ଦୟା ॥ ନିଗମ କଳ୍ପତରୁ ଗଳୁଛି ଯେଉଁ ସୁଧା । ନାସାରେ ଶୁକ ପିଉଛି ବଳାଇ ଶରଧା ॥ ସେ ସୁଧାକୁ ତୋର ଦାସ କରିଅଛି ଢଅ ଆଶ । ବା ନଦିଅ ମାତ ଚଳାଇଛି ବେଶ ॥ ଛପନ ଭୋଗ ଛତିଶ ବ୍ୟଞ୍ଜନର ଭୋଗ । ତୋ ବିନା କେ ଜାଣି ନାହିଁ ଚଉଷଠି ଭୋଗ ॥ ଏ ଭୋଗ ଭୁଞ୍ଜଣ ଭକ୍ତେ ହୋଇଛନ୍ତି ବାଇ । ଆନନ୍ଦରେ ନିତ୍ୟାନନ୍ଦ ରସିଛନ୍ତି ପାଇ । ୧୧୦ । ବାସନାରେ ବାସୁଦେବ ତୋହର ପ୍ରସାଦେ । ପରଷୁଣି ହୋଇଥାଉ ଭକତ ସୁହୃଦେ ॥ ଜୟ ଜୟ ସଙ୍କର୍ଷଣ ବାଉଲି ଶରଣ । ଭକତ ଭାବକୁ ଜାଣି କରନ୍ତୁ ଗ୍ରହଣ ॥ ନିତ୍ୟାନନ୍ଦ ନାମ ଅଟେ ପଦ୍ମାଙ୍କ ତନୟୀ । ତୁମ୍ଭ କୃପା ହେଲେ ଚୈତନ୍ୟଙ୍କ ସେବା ପାଇ ॥ ଅନନ୍ତ ନାମ ତୁମ୍ଭର ଅନ୍ତକର ମୋହ । ଜନମେ ଜନମେ ତୁମ୍ଭ ପାଦେ ରଖ ନେଇ ॥ ଦଶ ଦୁଇ ଅଙ୍ଗୁଳିରେ ଭୁ ବିହାର କରୁ । ଇଚ୍ଛାରେ କ୍ଷୟ କରାଉ ଇଚ୍ଛାରେ ବଢ଼ାଉ ॥ ସ୍ୱପନ ମାର୍ଗରେ ଆସି ରୂପ ଦେଖାଇଲ । ନେତ୍ର ନ ରହିଲା ସ୍ଥିର ଅନ୍ତର ହୋଇଲ ॥ ମନର ଆତୁର ଶୁଣି ଅପର୍ଣ୍ଣା ପାର୍ବତୀ । ସ୍ୱପନରେ ଉଭାହୋଇ ଭାରତୀ କହନ୍ତି ॥ ଜଞ୍ଜାଳର ବେଳ ହେଲା ଆସୁଛି ନିକଟ । ଭାବନା ନକର ସୁତ ବାର ଘରେ ଖଟ ॥ ଏସନ କହିଣ ମାତ ଅନ୍ତର ହୋଇଲେ । ଭେଳାରେ ଭାସି ଯାଉଛି ଭବ ଦୟା ଥିଲେ ॥ ଗୁରୁ କୃଷ୍ଣ ବଇଷ୍ଣବ ପାଦେ ଜୀବ ସୁଝା । ଦୟା ଥିଲେ ସେବା ଦିଅ ଜନ୍ମ ଜ୍ଞାନବନ୍ତି । ୧୨୫ । ନିର୍ଦ୍ଦୟା ଥିଲେ ହେ ସ୍ୱାମୀ ଅନ୍ତର

ହୁଅନ୍ତୁ । ସତ୍ତ୍ୱ ଗତ୍ତ୍ୱ ଅବା ଘଟକଥା ରଖିଥାନ୍ତୁ ॥ ଆପଣଙ୍କ ମଙ୍ଗଳଟି ଜଗତ ମଙ୍ଗଳ । ଆପଣ ମଙ୍ଗଳେ ଥିଲେ ଜୀବର ସୁଫଳ ॥

ଚୈତନ୍ୟ ଉବାଚ

ମନର ସଂଶୟ ଦେଖି ପ୍ରଭୁ ଦେବରାୟ । କେତେ ପ୍ରଶ୍ନ କରୁ ମନ ନଗଲା ସଂଶୟ ॥ ଏକମନ ହୋଇ ଶୁଣ ଚିତ୍ତ ସ୍ଥିର କର । ତୁମ୍ଭ ପ୍ରଶ୍ନଉତ୍ତର ହୋଇ କହୁ ସୁଧାସାର ॥ ଶୁଦ୍ଧ ଯୋଗୀମାନେ ଏଥେ ଶାନ୍ତ ଲୟ କରି । ଇନ୍ଦ୍ରିୟ ନିଗ୍ରହ କରି ତ୍ରିକାଳେ ବିହରି । ୧୩୦ । ତ୍ରିବେଣୀ ଗଙ୍ଗା ଯେବେ ଆକାଶେ ଯାଇପାରେ । ବିନା ଜଳରେ ହଂସ ସୂକ୍ଷ୍ମରେ କ୍ରୀଡ଼ା କରେ ॥ ମନ୍ତ୍ର ଯନ୍ତ୍ର ତନ୍ତ୍ର ତହିଁ ନ ଲାଗଇ କିଛି । କେବଳ ଉଦୟ କାଳ ଧରିଥିବୁ ବାଛି ॥ ସିଦ୍ଧ ଯୋଗିମାନେ ବେଳ କାଳ ଜଗିକରି । ଇଅଁଳା ପିଅଁଳା ଶିଶୁମ୍ନାରେ ବିହରି ॥ ନାଭିର ପବନ ନେଇ ନାସାରେ ଥୋଇବୁ । ଓଲଟ ଓଁକାର ବୃକ୍ଷେ ବସି ପାଣି ଦେବୁ ॥ ଅପ୍ରୀତି କୁଞ୍ଜରେ ପ୍ରୀତି କୁଞ୍ଜ ନେଇ ଦେବୁ । ସର୍ବଧର୍ମ ପରିତ୍ୟଜ୍ୟ ନାମେକ ବୋଲିବୁ । ୧୩୫ । ଅଧରାଧର ପାନେ ସ୍ୱ ସ୍ୱାହା ସମର୍ପିବୁ । ଅଧ ଊର୍ଦ୍ଧ୍ୱ ମଧ୍ୟ ହଂସ ମନାଉଣ ଥିବୁ ॥ ରା ସ୍ୱର ଧରି ଭୁଷଣ୍ଡି ଜାଣିଲା ଅନନ୍ତ । ମ ଅକ୍ଷର ବିସର୍ଗରେ କରି ହେଲେ ହେଳ ॥ ଏ ଅଟେ ସୂକ୍ଷ୍ମ ସାଧନ ଏଥୁଁ ଆନ ନାହିଁ । ପ୍ରତି ପ୍ରତି କରି ତୋତେ କହିଲୁ ବୁଝାଇ ॥ ନାମର ମହିମା ଧନ ଯେ ଜନ ପାଇଛି । ସେହି ଏହି ଭିନ୍ନ ନାହିଁ ସର୍ବ ସମଗଛି ॥ ଓଁ ହରେ ରାମ କୃଷ୍ଣ ତ୍ରିବୀଜ ଗୋପିଜନ । ବଲ୍ଲଭାୟ ସ୍ୱାହା ମନ୍ତ୍ର ରାଜୀବରେ ଲୀନ ॥ ଓଁ ରାମତାରକ ମନ୍ତ୍ରସ୍ୟ ମହାଦେବ ଋଷି । ଅନୁଷ୍ଟୁପ ଛନ୍ଦଟିକୁ ସଦା ଥିବୁ ରସି ॥ ଜାନକୀବଲ୍ଲଭ ଦେବ ବୋଲଣ ଚିନ୍ତିବୁ । ସଅ ବୀଜ ମଅଁ ଶକ୍ତି ତାରକ କହିବୁ ॥ ଓଁ ରାମ ମନ୍ତ୍ରାୟ ବିନଯୋଗର କାରଣ । ଶ୍ରୀରାମ ତାରକ ମନ୍ତ୍ର ଯନ୍ତ୍ର ଏହି ଜାଣ ॥ କ୍ଲୀଁ ଆମ୍ବାସନେ ଅଙ୍ଗୁଷ୍ଠାଭ୍ୟାଂ ନମଃ କୃଷ୍ଣାୟ ତର୍ଜ୍ଜନୀଭ୍ୟାୟୁଂ ସ୍ୱାହା ଦେବ ସମ ॥ ଗୋବିନ୍ଦାୟ ମଧ୍ୟମାଭ୍ୟାଂ

ନମଃ ଧର ସ୍ୱାହା । ଗୋପୀଜନ ବଲ୍ଲଭସ୍ୟ ଅନାମିକାଭ୍ୟାଂ ହୂଂ ସ୍ୱାହା ॥ କନଷ୍ଠାଭ୍ୟାଂ ବୌଷଟ୍ ଚନ୍ଦ୍ର ଚକ୍ରେ ସମଧର । ଓଁ କରତଳକର ପୃଷ୍ଠାଭ୍ୟାଂ ଫଟକର ॥ ପରମ ଗୁମାନ୍ଧ ମନ୍ତ୍ର ଚେତା ରଖିଥିବୁ । ବେଳ କାଳ ଆସିଗଲେ ପ୍ରକାଶ କରିବୁ ॥

ଗୁମାନ୍ଧ ହଗନ୍ଧ ମନ୍ତ୍ର

ଆଦ୍ୟଗମଂ, ଅନାଦ୍ୟଗମଂ, ଚକ୍ର ନିରଞ୍ଜନ ତାରକଗମଂ
ଓଁ ଜ୍ୟୋତିଗମଂ, ଅଜ୍ୟୋତିଗମଂ, ଶୂନ୍ୟ ନିରଞ୍ଜନ ତାରକଗମଂ
ଗତିଗମଂ, ଅଗତିଗମଂ, କୃଷ୍ଣ ନିରଞ୍ଜନ ତାରକଗମଂ,
କାଶିକ୍ଷେତ୍ର ବାରାଣସି ସ୍ଥାନଂ, ଗମେ ଗମେ ଯୁ ଗମେ ଗମଂ,
ହରି ହରିହରେ ହରିହରିଂ ହରୌହରିଃ ॥

ବ୍ରହ୍ମଗାୟତ୍ରୀ ପାବନ୍ତ ହୋଇଅଛି ଇହ । ଗୁରୁଆଜ୍ଞା ପ୍ରମାଣ ଏ ବାକ୍ଯ କହିଲଇଁ । ପୂର୍ଣ୍ଣବ୍ରହ୍ମ ଚଦାନନ୍ଦ ବିଶ୍ୱ ମୂଳାଧାର । ସେହି ଜ୍ଞାନ ଧ୍ୟାନ ଯାର ସେହି ମାତ୍ର ସାର ॥ ଶ୍ରୀକୃଷ୍ଣ ଯାହାର ଯଜ୍ଞ ଶ୍ରୀକୃଷ୍ଣ ଭଜନ । ଶ୍ରୀକୃଷ୍ଣ ଯାହାର ବୁଦ୍ଧି ଶ୍ରୀକୃଷ୍ଣ ସ୍ମରଣ ।୧୫୦। ହେଲେହେ ସୁଧାଧିତନୁ ଚିତ୍ତ ସମର୍ପିତା । ହରି ଇସ ପାନେ କଣ୍ଠ ନ ହୁଇ କୁଣ୍ଠିତା ॥ଯଦ୍ୟପିତା ଦେହ ପୋଡ଼ି ପାଉଁସ ହୁଅଇ । କୃଷ୍ଣନାମ ଭିନ୍ନଚିତ୍ତା ଆନ ନଜାଣଇ ॥

ଶ୍ଳୋକଃ

ଆତ୍ମା ନଦୀ ସଂଜମ ପୂଣ୍ୟ ତୀର୍ଥ । ସତ୍ୟୋଦକାଶୀଳ ତଟାଦୟୋର୍ମିଃ ॥
ତତ୍ରାଭିଷେକଂ କୁରୁପାଣ୍ଡୁ ପୁତ୍ରଂ । ନବାରିଣାଂ ଶୁଦ୍ଧତିବ୍ଚନ୍ତରାତ୍ମା ॥
ଅଖଣ୍ଡ ମଣ୍ଡଳାକାରଂ ପୂର୍ଣ୍ଣଂଜ୍ୟୋତିର୍ମୟଂ ବିଭୂମ୍
ଏକମେବାଦ୍ୱିତୀୟଂଚ ମାତ୍ମାନେ୍ୟବଲୋକୟ ॥

ଏ ଆତ୍ମା ପବିତ୍ର ନଦୀ ସଞ୍ଜମ ପୂର୍ଣ୍ଣତୀର୍ଥ । ସତ୍ୟ ଅଟେ ସଲିଳ ଏଥିରେ ହୁଅ ସାର୍ଥ ॥ ଏହିପରି ନଦୀ ଥାଉ ଗଙ୍ଗାନଦୀ ଯାନ୍ତି । ଅନାଦ୍ୟ ପୁତ୍ର ଶୁଣ ତୁ କହେଁ ପ୍ରତି ପ୍ରତି ॥ ଆତ୍ମା ନଦୀତୀରେ ସେହି ଉଦେ ହୋଇଛନ୍ତି ।

ଅଖଣ୍ଡ ମଣ୍ଡଳାକାର କୃଷ୍ଣଚନ୍ଦ୍ର ମୂର୍ତ୍ତି ।୧୫୫। ଅନ୍ତର୍ଯାମୀ କୃଷ୍ଣଚନ୍ଦ୍ର ପରମ ଈଶ୍ୱର । ଚରାଚର ସମସ୍ତଙ୍କ ହୃଦେ ନିରନ୍ତର ॥ ଚିହ୍ନିବା ଜନଟି ତାଙ୍କୁ ଚିହ୍ନିକରି ଥିରେ । ନ ଚିହ୍ନିବା ଜନ କାଳ କରଇ ସଂସାରେ ॥ ଦାମ୍ଭିକ କପଟି ହିଂସା କଳଆ ଘଟରେ । ନ ରହନ୍ତି କୃଷ୍ଣଚନ୍ଦ୍ର ମୁହୂର୍ତ୍ତେ ମାତ୍ରରେ ॥

## ଶ୍ଳୋକଃ

ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେନ ଚ
ମଦଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦଃ ।

ବୈକୁଣ୍ଠରେ ନାହିଁ ଯୋଗୀ ହୃଦୟରେ ନାହିଁ । ମୋର ଭକ୍ତ ଯେଉଁଠାରେ ମୋର ଗୁଣଗାଇ ॥ ସେମାନଙ୍କ ହୃଦୟରେ ସଦା ଥାଏ ରହି । ହେ ନାରଦ ଶୁଣ ଏହା ଅନ୍ୟଥା ନୁହଇ ।୧୬୦। ଗୁପା ତିଳକ ମାରଣ କୌପୁନ ପିନ୍ଧଣ । କପାବସ୍ତ୍ର ପରିଧାନ ହୁଅନ୍ତି ଅଙ୍ଗେଣ ॥ ଆସାବାଡ଼ି ବଂଶୀ ବଂଶୁଳୀକୁ ଧରି ହସ୍ତେ । ବିଭୂତି ଭୂଷଣ ହୋଇ ବୁଲନ୍ତି ହରଷେ ॥ ଭୁଳାମୁହାଁ କାଙ୍କଭଳି ସେମାନଙ୍କ ଭକ୍ତି । ପୁଣ୍ଡ୍ରକ ବାସୁଦେବ ଭାବକୁ ଦେଖାନ୍ତି ॥ ଏମାନେ ଭକ୍ତ ନୁହଇ ଆରେ ଭୁଲ ମନ । ଲୋକଙ୍କୁ ଠକାଉଥାନ୍ତି ବଡ଼ିମା ପଣେଣ ॥ ଆମ୍ଭ ଧର୍ମ ବଡ଼ ବୋଲି କହନ୍ତି ବଜାଇ । ଭକତଙ୍କ ଚିହ୍ନମାନ ଶୁଣ ମନଦେଇ ।୧୬୫। କୃଷ୍ଣ ଶ୍ରବଣ ମାତ୍ରକେ ଲୋମଦ୍‌ଗମ ହେବ । କୃଷ୍ଣ ଶ୍ରବଣ ମାତ୍ରକେ ଅଶ୍ରୁ ବହୁଥିବ ॥ କୃଷ୍ଣଶ୍ରବଣ ମାତ୍ରକେ ଅଙ୍ଗ ପୁଲକିତ । କୃଷ୍ଣ ଶ୍ରବଣ ମାତ୍ରକେ ଗଦ୍‌ଗଦେ କମ୍ପିତ ॥ ଭକ୍ତଙ୍କ ମହିମା କେହୁ ବର୍ଣ୍ଣିନା କରିବ । ସତ୍ୟ ଶାନ୍ତି ଦୟା କ୍ଷମା ତାଙ୍କଙ୍କର ଭାବ ॥ ପ୍ରେମ ନେତ୍ରେ ଭକ୍ତ ସଦା କରେ ଉଚ୍ଚରଣ । ଭକତର ଗଣ୍ଠିଧନ ଜୀବର ଜୀବନ ॥ ଧର୍ମ ଅର୍ଥ କାମ ମୋକ୍ଷ ଭକ୍ତେ ଇଚ୍ଛା ନାହିଁ । ବିକୃତିହ୍ଲାଦିନୀ ରସେ ହୋଇଥାନ୍ତି ବାଇ ।୧୭୦। ଉଲଟିବ ଚକ୍ଷୁ କେବେ ପ୍ରାଣ ପରିହରି । ଅନ୍ତେ କ୍ଳୀଁ କୃଷ୍ଣାୟନମଃ ଚେତା ଥାନ୍ତି ଧରି ॥ ଭକତମାନେ ଏ ରସେ ହୋଇଥାନ୍ତି

ବାଇ । ଭକ୍ତ ହୋଗୁ ଭଗବାନ ଭକ୍ତବନ୍ଧୁ ହୋଇ ॥ ଏପରି ହୃଦୟେ କୃଷ୍ଣଚନ୍ଦ୍ରଙ୍କ ନିବାସ । ବୁଝାଇ କହିଲେ ତୁହି ନକରୁ ବିଶ୍ୱାସ ॥ ହୃଦୟେ ଅଛନ୍ତି ହରି ନଜାଣି ଯେ ଜନ । ବ୍ୟର୍ଥେ କରୁଥାନ୍ତି ଭ୍ରମି ତୀର୍ଥ ପର୍ଯ୍ୟଟନ ॥

ଶ୍ଳୋକଃ

ଅଖଣ୍ଡଂ ମଣ୍ଡଳାକାରଂ ଶଚିସୁତଂ ସୁଧାକରଂ ।
ଭକ୍ତସ୍ୟୈବ ହୃଦାକାଶେ ନିତ୍ୟମେବ ପ୍ରକାଶତେ ॥

ଅଖଣ୍ଡ ଶ୍ରୀ ଶଚୀସୁତ ଦୃକ୍‌ସିଦ୍ଧ ଚୈତନ୍ୟ । ପୂର୍ଣ୍ଣବ୍ରହ୍ମ ସନାତନ ଜଗତ ପାଳନ ।୧୭୫। ଭକତଙ୍କ ହୃଦୟରେ ହୋଇ ପ୍ରକାଶିତ । ସାକାର ସ୍ୱରୂପ ହୋଇ ଖେଳଇ ଜଗତ ॥ ବାହ୍ୟେ ରାଧା ଅନ୍ତେ କୃଷ୍ଣ ଯୁଗଳ ଆଲେପ । କଳା ଗୋରା ମିଶାମିଶି ଗଉର ସ୍ୱରୂପ ॥ ବକ୍ତା ବହନ୍ତା ଗ୍ରହାନ୍ତା ଶ୍ରୋତା ସ୍ମରନ୍ତା । ଖେଳନ୍ତି ଖେଳାବନ୍ତି ଯେ ଧରଣୀ କରତା ॥ ମନ ଚକୋର ପକ୍ଷୀ ଚନ୍ଦ୍ରରେ ଠାବକର । ଏପରି ପ୍ରଭୁ ଆଜ୍ଞା କମ୍ପାଇଁ ବୁଝମର ॥ ଅମୃତ ଘଟ ଚୋଟିକ ବିଷ କରୁଅଛ । ଚୈତନ୍ୟ ମଧୁକୁ ତେଜ୍ୟା କମ୍ପାଇଁ କରୁଛ ! ଭ୍ରମରର ଗୁମ୍ଫାକୁ ପରମ ଗୁମ୍ଫା ଯୋଖ । ଅନାହତ ଗୁମ୍ଫାରେ ଦ୍ୱାଦଶ କର ଲକ୍ଷ୍ୟ ॥ ଶୂନ୍ୟ ଗୁମ୍ଫାରେ ମିଳନ କେବେହି ହୋଇବ । ବାଛୁ ବାଛୁ କହୁଅଛୁ କର ଅନୁଭବ ॥ ଅନିତ୍ୟ ଶରୀର ଗୋଟି ନୁହେଁ ଆପଣାର । ବିଭବ ଶାସ୍ତ୍ରର ନୁହେଁ ଆତ୍ମାର ଅନ୍ତର ॥ ଆତ୍ମା ଶାନ୍ତ ହୋଇଲେହି ଦେହୀ ଶାନ୍ତକର । ଭଲ ଭାବ ଭଜମନ ଚୈତନ୍ୟ ଠାକୁର ॥ ଚୈତନ୍ୟ ମଧୁକୁ ଖାଇ ହୁଅ ଶୁଦ୍ଧ ଦେହୀ । କୃତାନ୍ତ ଭୟ ନ ଥିବ ସାର ଦେଲୁ କହି ।୧୮୫।

ଶ୍ଳୋକଃ—ମନ ଉବାଚ

ନପୁତ୍ର ଦାରାନ୍ ନଗୃହାନ୍ ନବନ୍ଧୁ ନ୍ । ଜାତେନଯେ ଦୈବକୁଳଭମାନାନ୍
ଭକ୍ତ୍ୟହଂରେଷ୍ଟଚାରଣାରବିନ୍ଦେ । ଭବେ ଭବେମେସ୍ତୁ ତବଶ୍ରୀପ୍ରସାଦାତ୍

ବାଉଳି ମନ ଜଣାଏ ଚଇତନ୍ୟ ପାଶ । ଏହି ଭକ୍ତା ଦାଅ ପ୍ରଭୁ ଚଙ୍କଜ ବିଳାସ ॥ ଇଚ୍ଛାନାହିଁ ମୋ ଗୃହିଣୀ ପୁତ୍ର ପରିଜନେ କୁଳମାନ

ସମ୍ପଦକୁ ନ ଇଚ୍ଛଇ ମନେ ॥ ଛୁଡ଼ିଛୁ ସକଳ ଆଶ ହେ କରୁଣାସିନ୍ଧୁ
ଯାହାଙ୍କର ସେଥିପ୍ରତି ମାନଜନ ବନ୍ଧ ॥ ଡାକ ଡାକ ତୋତେ ପ୍ରଭୁ
ନ ପାଇଲି ଠାବ । ମୋହର ଭକ୍ତିରେ ତ୍ରୁଟି ଅଛୁ ହେ ମାଧବ ॥ ତବ
ଦୋଷ ନାହିଁ ପ୍ରଭୁ ମୋର ଏକା ଦୋଷ । ଏଥିରେକାହାର ଦୋଷଜାଣନ୍ତି
ପୀତବାସ ।୧୯୦। ତୁମ୍ଭଠାରେ ଯଦି ମୁହିଁ ଆତ୍ମା ବିକଥାନ୍ତି । ଏ ଭବ
ରୌରବକୁ ମୁଁ କମ୍ପାଇ ଡରନ୍ତି ॥ ନମଇଁହେ ନରସିଂହ ବ୍ରହ୍ମସନାତନା
ଭକତ ରକ୍ଷଣ ହରି କାଳୀୟ ମର୍ଦ୍ଦନ ॥ ଭକତ ଭାବେ ସାକାର ହୋଇଛ
ଗୋସାଇଁ । ଜଗତର ନାଥ ଜଗତର ଅଛ ତୁହି ॥ ଭାଇ ବଳଭଦ୍ର
ତୋର ସଙ୍ଗ ନ ଛାଡନ୍ତି । ସୁଭଦ୍ରା ଦେବୀ ମଣୋହି ପାକ ଯୋଗାବନ୍ତି ॥
ସଦା ସର୍ବଦା ସୁଦର୍ଶନକୁ କରେ ଭରୁ । ସିଂହାସନେ ଶୋଭା ପାଉ
ଠଣ ରୂପ ଧରୁ । ୧୯୫ । ପୁରାଣରେ ଶୁଣିଥିଲି ତିନି ରୂପ ବୋଲି ।
ନୀଳାଚଳେ ସ୍ଥୂଳ ରୂପ ଦେଖି ଭଲ ହେଲି ॥ ଏବେ ଆତ୍ମା ନୀଳାଚଳେ
ବଳାଇଛି ଆଶ । ଶ୍ୱେତ ଦାରିଦ୍ର୍ୟ କଳାରେ ଅଛି ଏ ମାନସ ॥ ନିତ୍ୟ
ଆତ୍ମା ଲୀଳାରେ ଏ ମନ ସଦା ଥିବ । ଅତ୍ୟ ସହାସେ ବାଉଳା ମନ
ଜଡାଇବ ॥ ବାଳକ ଲୁପିବା ପାଦ ମାନସ ଭ୍ରମର । ପଦ୍ମନେତ୍ର
କଞ୍ଜତରେ ତ଼ାଳ ବଂଶୀଧର ॥ ଅହସ୍କର ଅସ୍ତାଚଳେ ପ୍ରବେଶିଲେ ଯାଇ ।
ଚୈତନ୍ୟେ ଚୈତନ୍ୟ ହେଲେ ଚୈତନ୍ୟ ଗୋସାଇଁ ।୨୦୦। ସପ୍ତାଙ୍ଗ
ଅଷ୍ଟାଙ୍ଗ ଧ୍ୟାନ ଧାରଣ ବିଧାନ । ଶୁଣିଣ ସନ୍ତୁଷ୍ଟ ମନ ଚୈତନ୍ୟ
ବଚନ ॥ ମୂଳଟି ବିଶ୍ୱାସ ଅଟେ ଦାର୍ଢ୍ୟକର ମନ । ଅବିଶ୍ୱାସିରେ
ଅଭେଦ ପଦ ଧ୍ରୁବ ଜାଣ ॥ ଦୁଇଶତ ଦୁଇ ପଦେ ଅଧ୍ୟାହେଲା ଶେଷ ।
ଶ୍ୟାମସୁନ୍ଦର ଆବ୍ରହ୍ମ ପାଦେ ଥୋଇ ଆଶ ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ସପ୍ତାଙ୍ଗ ଅଷ୍ଟାଙ୍ଗ
ଧ୍ୟାନ ଧାରଣେ ଭକ୍ତି ଉପଦେଶ ଶ୍ରୀସାରସୁଧା ଗୀତା
ମନ ଚୈତନ୍ୟ ସମ୍ବାଦେ ନାମ ସପ୍ତମ ଅଧ୍ୟାୟ ।

— ※ —

# ଅଷ୍ଟମ ଅଧ୍ୟାୟ

ନବଜଳଧର ରୂପ ଶ୍ୟାମଳ ବରନ । ଶିରେ କେକୀପୁଚ୍ଛ ଜାମ୍ବୁଡ଼ାଳ ସୁଶୋଭନ ॥ ତୋହର କୃପା ହୋଇଲେ ପଙ୍ଗୁ ଲଙ୍ଘେ ଗିରି । ମୂକ ବାତୁଳ କରେ ବେଦୁଷ ନୁହେଁ ସରି ॥ ଅଷ୍ଟ ଅଧ୍ୟା କୁହାଇଣ କରାଇବ ତୋଷ । ମୁହିଁ ଲେଖୁଛି ବୋଲିଣ ନଥିବ ମାନସ ॥ ମୁହିଁ ବାକ୍ୟ ତୋର ଅଟେ ହେ ଜୀବର ବନ୍ଧୁ । ମୁହିଁ ବାକ୍ୟ ନେଇ ରଖ ଅକୂପାର ସିନ୍ଧୁ । ଦୟାର ସାଗର ନାଥ ଦେବ ଦେବ ରାୟ । ଚଳ ଅଚଳ ବସ୍ତୁଙ୍କ ହୃଦରେ ବିଜୟ । ୫ । ଅଭାଗ୍ୟ ଭାଗ୍ୟକର୍ତ୍ତା ଅକର୍ମେ କର୍ମ ଦେଉ । ଯେ ଯାହା ଭାବନ୍ତି ନାଥ ସେହି ଫଳ ଦେଉ ॥ ପ୍ରକୃତ ଭକ୍ତମାନେ କାମନା ନ କରନ୍ତି । ନିର୍ଗୁଣରେ ମନ ଥୋଇ ଗୁଣରେ ଖେଳନ୍ତି॥ ତାହାଙ୍କ ହୃଦୟେ ନିତ୍ୟ ନୈମିତ୍ତିକ ଥାଉ । ଆତ୍ମା ଗର୍ତ୍ତରେ ଛାହୁରୁ ସହସ୍ରାରେ ରହୁ । ଦମାନ୍ତର କୃପା ଯେବେ ହୋଇବ ମୋହରେ । ଅଜ୍ଞାନ ଛୁଟିଣଯିବ ଘଟ ପଞ୍ଜରରେ॥ କହ ନାଥ ସାରସୁଧା ଇକ୍ଷୁ ଖଣ୍ଡରସ । ସାଧୁଜନ ମନ ଭୃଙ୍ଗେ ଚାଖନ୍ତୁ ସୁରସ । ୧୦ । ଏହିପରି ଆଜ୍ଞା ଯେବେ ତୋହର ହୋଇବ । ଯମୁନା ଘାଟିଆ ତୁମ୍ଭ ହେଲେ ନାବ ଯିବ ॥ ଅଗତିଆର ଜଞ୍ଜାଳ ଶୁଣ ବା ନଶୁଣ । ଦାସଙ୍କୁ-ଦାସ କରିଣ ରଖ ଆର୍ତ୍ତିତ୍ରାଣ ॥ କି ଜ୍ଞାନ କି ଧ୍ୟାନ ଯୋଗ ଆଗୁର ତୁମ୍ଭର । ଚରଣ ଲଭିବ ବନ୍ଧୁ କହ ପ୍ରାଣେଶ୍ୱର ॥ ପ୍ରକୃତି ଅଇରାମନ ଓଟାରି ନଅନ୍ତି । ଜଞ୍ଜାଳରେ ପକାଇଣ କୁପଥେ ପକାନ୍ତି ॥ ଏଥିକୁ ଜାଗ୍ରତ କରିବାକୁ ଅସମର୍ଥ । ନନ୍ଦଘୋଷ ରଥେ ତୁମ୍ଭ ଅଛ ସାମରଥ ।୧୫। ସ୍ୱାମୀ ସାମରଥ ଯୋଗୁ ନାହିଁ ଘଟ ଖାତ । ରହୁ ବା ସତ୍ତ୍ୱ ଏ ଦେହ କରିଛି ଅର୍ପିତ ॥ ମାନସସରୋବରରେ ଥାଇ ମନ ଜାଣିଅଛ । ଘୋର ପାପ ଦେଖି ସ୍ୱାମୀ କିଛି ନ କହୁଛ ॥ ନୀରବ ହୋଇଲେ ନିନ୍ଦା ଜଗତେ ଶୁଭିବ । ପତିତପାବନ ନାମ ଆଉ କି

ଉଦ୍ଧବ ॥ ଦାସରେ ନିର୍ଘଣ କଲେ କା ଆଗେ କହିବ । ଭୃତ୍ୟ ଦୋଷୀ ହେଲେ ବନ୍ଧୁ ମାର୍ଜ୍ଜନା କରିବ ॥ ପତ୍ନୀ ଅଭକତା ହେଲେ ଶିକ୍ଷା ଦିଏ ପତି । ପୁତ୍ର ଅବିବେକ ହେଲେ ପିତା କ୍ଷମା ଦିଅନ୍ତି । ୧୦ । ଦାସୀ ଅଭକ୍ତି କଲେ ସାମନ୍ତ ଦିଏ କ୍ଷମା । ଭକ୍ତ ଅପରାଧ ପ୍ରଭୁ କରନ୍ତି ମାର୍ଜ୍ଜନା । ଦାସ ଦୋଷ କ୍ଷମାକର ହେ ରାମ ରାଘବ । ବଧିର ଅନ୍ଧ ହୋଇଣ ଭାସୁଅଛି ଭବ ॥ ଧନ ସ୍ୱାନ ଅକଞ୍ଚନ କରୁଛି ଗୁହାରି । ଅନ୍ୟରେ ଆଶା ଭରସା ନାହିଁଟି ମୋହରି ॥ ତୋର ଆଶ୍ରା କରି ସନ୍ଧ ସଢ଼ିବ ଏ ଘଟ । ଏ କାରଣ ରହିଥାଇ ଆହେ ନନ୍ଦସୁତ ॥ ଘଟରେ ମୋ ଆଶା ନାହିଁ ତୋ ପାଦରେ ଆଶ । ଏହି ଭିକ୍ଷା ଦିଅ ସ୍ୱାମୀ ଆଶ୍ରାସ ବିଳାସ ।୨୫। କି ଜ୍ଞାନ କି ଧ୍ୟାନ ଯୋଗୁ ସାଧି ପାରିବଇ । ସମସ୍ତ ନାହିଁ ହେ ବନ୍ଧୁ ନଜାଣୁ କି ଭକ୍ତି ॥ ରୂପ ବସ୍ତୁସବୁ ଦେଖି ବୁଝନ୍ତୁ ଅନ୍ଧାର । କଉତୁକ ଦେଖୁ ଅଛି ରହି ଏ ଘଟର ॥ ଯାହା ହେବାର ହୋଇଛନ୍ତି ହେଉଛି କହ ସ୍ୱାମୀ । ଯାହା ବା ତାହା କରନ୍ତୁ ଲେଖିଛି ଲକ୍ଷିମି ॥ ଆନ କି ହୋଇବ ନାଥ ଆଜ୍ଞା କି ଗ୍ରାହିଲେ । ଗଳା ଦେଇ ଜରିଅଛି ମନ ରାଜା ବୋଇଲେ ॥ ଶରଣ ସୋଦର ପ୍ରଭୁ ନ ହୋଇବ ଯେବେ । ଅଗତିଆ ଦୁର୍ବଳଟି ହୋଇଯିବ ତେବେ ।୩୦। ପାଞ୍ଚ ପଚିଶ ଷଡ଼ଏ ଦିଆଇବେ ଦୁଃଖ । ଏବେ ଦୟା ରଖ ମାତ୍ର ସଂସାର ପାଳକ ॥ ଜଗତ ଚିନ୍ତାମଣି ନାଥ ଭୁବନ ନାୟକ ॥ ଜନ୍ମେ ଜନ୍ମେ ଅଗତ୍ୟାକୁ ଦାସ କରି ରଖ ॥

ଚୈତନ୍ୟ ଉବାଚ

କହନ୍ତି ଅନାଦି ବ୍ରହ୍ମ ଶୁଣ ବାଇମନ । ଅବୋଧ ମନକୁ ବୋଧ ମନ ସୂତ୍ରରେଣ ॥ ଇହ ସଂସାରେ ମନ ଦୁର୍ଲ୍ଲଭ ଦେହଧରି । ଯେତେକ ଆଇଣ ଯେତେକ କର୍ମ ସାଧି କରି ॥ କେବଳ ସାଧୁ ସଙ୍ଗକୁ କରି ବାଇମନ । ଅକାଳ ମୃତ୍ୟୁ ତୋହର ହୋଇବ ଦହନ ।୩୫। ତପସ୍ଥାନେ ରହି ଧ୍ୟାନ ମନ ଚଳ ବନୁ । ଚଷି ଲଭ ପାଦପଦ୍ମ ଧ୍ୟାୟି

ଶରୀରକୁ ॥ ସତ ଶାନ୍ତ ଦୟା କ୍ଷମା ନ ସାଧଇ ଯେହ୍ନ । ଭ୍ରମ ନ ଛୁଟଇ ସାଧୁ କାହୁଁ ସେ ହୁଅଇ ॥ ଅକର୍ମ ବିକର୍ମ କର୍ମ ସୁକର୍ମାଦ୍ଧ ଧର୍ମ । ସୁସାଧୁ ଲକ୍ଷଣ ବୁଦ୍ଧି ବିବେକ କର୍ମ ॥ ଶୁଦ୍ଧ ଆନନ୍ଦ ମନ୍ତିଟି ଯାହାର ହୁଅଇ । ବିକାର ଅହଂକାର ସମାନ ମଣିଥାଇ ॥ ତନୁ ପୁଲକାଇ ପ୍ରେମ ଜନମନ୍ତ ହୋଇ । ପ୍ରସନ୍ନ ବଦନେ ମୋତେ ଯେ ଜନ ଭଜଇ । ଗୀତା ଭାଗବତେ ସଦା ସୁରସିକ ହୋଇ । ନିଜ ଦେହ ଅଛି ନାହିଁ ଶୋଚନା ନଥାଇ ॥ ମିଳୁ ଅବା ନମିଳୁ ବା ଅମୃତ ଭୋଜନ । ଆକାଂକ୍ଷା ନରଖି ସେଥି ବିଷୟା ବର୍ଜନ ॥ ପାଇଲେ ନ ପାଇଲେ ସେ ସମାନ ମଣଇ । ସଦା ଚେତନାରେ ଥାଇ ସନ୍ତଙ୍କେ ରମଇଁ ॥ ଜନନୀ ବନ୍ଧୁ ବାନ୍ଧବ ସର୍ବସ୍ୱ ଏକଜ । ମିତ୍ର ଶତ୍ରୁ ସମମଣେ ଶିଶୁଙ୍କ ଚରିତ୍ର ॥ ଶୁଣ ଅଗସ୍ତିଆ ଏହିପରି ଥିଲେ ଜ୍ଞାନ । ଭକତ ବୋଲି ତାକୁ ବୋଲନ୍ତି ବୁଦ୍ଧଜନ ॥ ଉଦ୍ବେଗେ ନଥାଇଣ ମନ ଯୋଗରେ ଅଧୀନ । ଆଦ୍ୟ ମଧ୍ୟ ଅନ୍ତ ବାରି କରି ସମର୍ପଣ ॥ ଏହାପରେ ପାଦପଦ୍ମେ ସେବା ଯେ ପାଇଛି । ସେ ମତେ ପାଇ ଆନନ୍ଦ କନ୍ଦରେ ରହିଛି ॥ ମୁହୂର୍ତ୍ତେ କ୍ଷଣେ ଦଣ୍ଡେହେଁ କେବେ ନ ଛାଡ଼ିବ । ବକ ନେତ୍ରପରି ଧରି ମନ ଟାକିଥିବ ॥ ଧ୍ୟାନରେ ପଶିବାକୁ ସୁତଳ ଛନ୍ଦବାଟ । ଉଜାଣି ବଳଣି ଖଞ୍ଜି ଶିଶୁମୁନା ବାଟ ॥ ନବଦ୍ୱାର କଣି ଅବଯୁକ୍ତ ମନ୍ଦିର ଯିବୁ । ଅସାଧ୍ୟ ଅନନ୍ତପୁର ବିହାର କରିବୁ ।୫୦। ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଅଲକା ଭୁବନ । ପରଂବ୍ରହ୍ମ ନିଃଶବଦ ନାଦ ମୂଣ୍ଡାରେଣ ॥ ଦାହାର ବାରି ଯାଇଣ ଅନ୍ତରେ ସମ୍ଭଇ । ଗାୟତ୍ରୀ ଅଙ୍ଗରେ ରହି ବିହାର କରଇ ॥ ଗଙ୍ଗା ଯମୁନା ନାବେ ସୁମନ କାତ ଧରି । ଓଲଟି ପାଲଟି ଯାଇ ହଂସେ କ୍ରୀଡ଼ାକରି । ରୂପ ରେଖ ନାହିଁ ରୂପ ଅଛି ନ ଦିଶଇ ॥ ବିବେକରେ ଥାଇଣ ସେ ଶବଦ କରଇ ॥ ଦଶଦଳରୁ ସହଜେ ବାୟୁ ଟେକ ନିଅ । ଆଦ୍ୟ-ଶକ୍ତିଙ୍କି ମନାଇ ନାସାରେ ଖେଳାଅ । ୫୫ । ଘୁମ ଶବଦ କରିଣ ବାୟୁ ଖେଳୁଅଛି । ଜ୍ଞାନ ନେତ୍ରରେ ଗୁହିଁଲେ ଚେତାରେ ରହିଛି ॥

ତ୍ରିଭୁବନ ଉପରେଣ ଅଛଇ ଗୁପତ । ସ୍ଥୂଳ ସୂକ୍ଷ୍ମ କାରଣରେ ବହରଇ ତତ୍ତ୍ୱ ॥ କାରଣ ଚନ୍ଦ୍ର କୋଟିଏ ସୂର୍ଯ୍ୟ ପରି ଜ୍ୟୋତି । ଅଖଣ୍ଡରୁ ଖଣ୍ଡ ହୋଇ ଖେଳ କଲେ କ୍ଷିତି ॥ ଶରୀର ନ ଦିଶଇ ଶରୀର ଗୋଟି ଥାଇ । ଶବଦ ବ୍ରହ୍ମ ସ୍ୱରୂପ କହିଲୁ ବୁଝାଇ ॥ ଏ ମନ ଚଞ୍ଚଳଟି ଅଚଳ ମନ କର । ହରଷ ବିରସ କ୍ରୋଧ ହିଂସା ପରିହର । ୭୦ ।

ସୋମ ସୂର୍ଯ୍ୟ ମନ ବାୟୁ ଭ୍ରୂରୁ ମଧ୍ୟେ ଥୋଇ । ଲକ୍ଷ ପରି ଜ୍ଞାନ ଯାର ଯେବେ ହୋଇବଇଁ ॥ ସାନୁକୁ ଯଦ୍ୟପି ହେବ ତୋହର ଏ ଘଟ । କ୍ଷିର ମାର ଅବାରଣ ପରି ଯିବ ଯୋଟ ॥ କୁରୁ ପାଣ୍ଡବ ମଧ୍ୟରେ ପୋତା ଅଛି ଲକ୍ଷ । ଲକ୍ଷ ତଳେ ଜଳ ଅଛି ଅତଳେ ନିରେଖ ॥ ଚଳକୁ ରଖିବ ଦୃଷ୍ଟି ଉପରକୁ ମୁଷ୍ଟି । ପ୍ରତିବିମ୍ବ ନ ହଲିବ ଶରଥିବ ଯୋଖି । ମତ୍ସ୍ୟର ବାମ ନୟନେ ସଲକ୍ଷି ବନ୍ଧିବ । ନ ହଲିବ ଓଷ୍ଠ ଦନ୍ତ ଜିହ୍ୱା ସଲକ୍ଷିବ । ୭୦ । ସଲଖେ ଲକ୍ଷକୁ ଲକ୍ଷ ଯେବେଟି ଛନ୍ଦିବ । ମନଭେଦ ଶର ମୀନ ନୟନ ଭେଦିବ ॥ ମତ୍ସ୍ୟର ବାମ ନୟନେ ସଲକ୍ଷି ବନ୍ଧିବୁ । ଦୁଇନେତ୍ର ଏକ କରି ତ୍ରିନେତ୍ର ଖୋଲିବୁ ॥ ପଲକ ପକାଇଦେଲେ ଯେଣି ମାରି ଦେବେ । ଅସ୍ତ୍ର ଶସ୍ତ୍ର ହରି ନେବେ ଗର୍ତ୍ତେ ଠେଲିଇବେ ॥ ଚେତା ଚଇତନ୍ୟ ଜଗି ଯେବେ ଭେଦପାରୁ । ପ୍ରବୃତ୍ତି ନିବୃତ୍ତିହେବ ନିଜ ସର୍ବେବରୁ ॥ ସୁମନ କୁସୁମ ମାଳା ତେବେଟି ଛୁଞ୍ଚିବ । ଦ୍ରୌପଦୀ ଅର୍ଜ୍ଜୁନଙ୍କର ମିଳନ ହୋଇବ ॥ ତେବେଟି ହିଁ ଶ୍ରୀକୃଷ୍ଣ ହୋଇବେ କୃଷ୍ଣସଖା । ନିଗମ କଳ୍ପତରୁରେ ଧରି ଯାଇ ଶାଖା ॥ ନିଗମ କଳପତରୁ ଯାହାକୁଟି କହି । ଦେବ ନାଶନ ବଟଟି ତାନାମ ବୋଲଇ ॥ ରହସ୍ୟ ପ୍ରସ୍ତାବରେ ମୁଁ ତୋରେ କହିଲଇଁ । ରୂପ ଥାଇ ରୂପ ନାହିଁ ମୋ ନିବାସ ତହିଁ ॥ ସୃଷ୍ଟି ପ୍ରଳୟ ଅନ୍ତେ ଅନନ୍ତ ଅଙ୍ଗେ ଥାଇ । ସୃଷ୍ଟି ଉତ୍ପତ୍ତିରେ ମୁହିଁ ଓଁକାର ବୋଲାଇ ॥ କ୍ଲୀଁ ଇଁ ବୀଜ ସ୍ୱରୂପ ମୁଁ ପ୍ରେମର ପୁରୁଷ । ପ୍ରକୃତି ଜାତ କରାଇ ଖେଳେ ବନାଦେଶ ।୭୫। ପଙ୍କଜରେ ଖେଳ କରେ ଭକ୍ତ

ହିତ ପାଇଁ । ସୁ ରୁଷ ପଣରେ ମୁହିଁ ପୌରୁଷ ବୋଲାଇ ॥ ଶବ୍ଦବ୍ରହ୍ମ ନାମ ମୋର କ୍ଷେତ୍ର କ୍ଷେତ୍ରଜ୍ଞରେ । ଚୈତନ୍ୟ କାହାଣୀ ଶୁଣି ମନ ରଖ ମୋରେ ॥

## ମନ ଉବାଚ

ପୃଚ୍ଛାକଲେ ଅଗତ୍ୟା ଗରୁଡ ପଚ୍ଛେ ରହି । ପ୍ରଥମର ସୃଷ୍ଟି କଥା କହନ୍ତୁ ବୁଝାଇ ॥ ପ୍ରଥମ ବାକ୍ୟ ପ୍ରଥମେ ବୁଝାଇ କହିବ । ତା'ପରେ ଦ୍ୱିତୀୟ ବାକ୍ୟ ପ୍ରଚ୍ଛିନ୍ନ କରିବ ॥ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପ୍ରଥମେ କାହିଁ ଥିଲା । ମାତା ପିତା ଗୁରୁ ଶିଷ୍ୟ କେମନ୍ତେ ହୋଇଲା ॥୮୦॥ ପ୍ରତି ପ୍ରତି ପାଦପଦ୍ମେ ପଡ଼ୁଛି ଗୋସାଇଁ । ଜନ୍ମ ଅନ୍ଧ ହୋଇ ମୁହିଁ ଅଛୁ ପ୍ରାଣସାଇଁ ॥

## ଚୈତନ୍ୟ ଉବାଚ

ମନର ସଂଶୟ ଶୁଣି କହଇ ଚୈତନ୍ୟ । ଗହନ କଥାରୁ ତୋର କହିବା ପ୍ରଚ୍ଛିନ୍ନ ॥ ପ୍ରଥମରେ ମହାଶୂନ୍ୟ ଅଛନ୍ଦ ଅକ୍ଷର । ବନ୍ଦୁ ଅକାର ଉକାର ତ୍ରିଗୁଣ ଓଁକାର ॥ ସପ୍ତମାତ୍ରା ମଧ୍ୟେ ଅଣ୍ଡ ଅକ୍ଷର ରୂପରେ । କ ଶୋଭା ଦିଶନ୍ତ ପ୍ରଭୁ ନିକୁଞ୍ଜ ବନରେ ॥ ଅକ୍ଷର କ୍ଷର ସ୍ୱରରେ ଏକାକ୍ଷର ହୋଇ ॥ ଜଗତ ମାତ ଦେବକୀ ଉଦ୍ଭବନ୍ତି ତହିଁ । ଆକାର ଉକାର ଏକାର ଏ ତିନ ହୋଇ । ଉକାର ଆକାର ଦୁଇ ମିଶି ପଞ୍ଚ କହି ॥ ଓଁକାର ସ୍ୱରୂପ ତମଗୁଣ ଶକ୍ତି କହି । ବଳଟି ଆକାର ରୂପେ ଛନ୍ତି ଭବଗ୍ରାହୀ ॥ ଆକାର ସ୍ୱର ଅଟଇ ମଥୁରା ଭୁବନ । ବସୁଦେବଙ୍କର ପୁର ଅଟେ ସେହୁ ସ୍ଥାନ । ଅର୍ଦ୍ଧମାତ୍ରା ପୁର ଅଟେ ଦେବକୀ ନିବାସ । କୃଷ୍ଣ ଜନ୍ମ ହୋଇଥିଲେ ତାହାଙ୍କ ଔରଷ ॥ ଓଁକାର ନିକୃଟ ସ୍ଥାନ ବୃନ୍ଦାବନ କହି । ଯଶୋଦାଙ୍କ କୋଳେ କୃଷ୍ଣ ବଢ଼ିଥିଲେ ରହି । ବୃନ୍ଦାବନେ ଲୀଳା କରି କଂସ

କେଶୀ ମାର । ପୁଣି ମଥୁରାକୁ ଗଲେ ଲୀଳା ସାର କର ॥ ମଥୁରା ପୁରକୁ ଯେବେ କୃଷ୍ଣଚନ୍ଦ୍ର ଯିବେ । ଘଟଣ ଛଡ଼ିବ ନାହିଁ ବୃନ୍ଦାବନ ଥିବେ ॥ ଶୁଣ ତୁ ଆତ୍ମା ମରଙ୍ଗ ଉପର ଖେଳୁଛୁ । ତହିଁ ମଧ୍ୟେ ହଂସ ଖେଳ ଆନନ୍ଦ ଲଭୁଛୁ ॥ ସତ୍ତଗୁଣ ସଂସାରରେ ବିଖ୍ୟାତ କରଇ । ରଜଗୁଣେ ବଢ଼େ ତମଗୁଣେ ନାଶ ଯାଏ ॥ ପ୍ରଥମରେ ଗୁରୁ ହୋଇ ଦୁଇ ବର୍ଣ୍ଣ ହେଲ । କଳ୍ପନା ସ୍ୱରୂପ ଶିଷ୍ୟ ହୋଇ ଗତ କଲ । ୯୫ । ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣ ନକ୍ଷତ୍ରାଦିଗଣ । ଭବ ଗୀତ ପିତା ପୁତ୍ର ଏହୁ ହେଲେ ପୁଣ ॥ ପୁରୁଷ ପ୍ରକୃତି ଜୀବ ପରମ ରୂପରେ । ଓଲଟ ପାଲଟ ବିପରୀତର ଭାବରେ ॥ ଏପର ଭାବ ଭାବରେ ହେଲ ମନ ରାଜା । ସାରତତ୍ତ୍ୱ କହୁଛୁ ଅଥବେ ଚେତା ସଜା ॥ ଚନ୍ଦ୍ରର ଯେ ଷୋଳ କଳା ଶୁଣ ମନ ସାର । ଅକଳଙ୍କ, ନିଦର୍ଜିତ, ନି ସ୍ୱତ ସର ॥ ଅସୁଖ, ନିର୍ମଳ, ବିନ୍ଦୁ, ଆଉ ଅନାଦି । ସୁଷୁମ୍ନା, ଚେଷ୍ଟା, ସ୍ୱରୂପ, ନିରଞ୍ଜନ, ପଦ । ୧୦୦ । ଆହାର, ନିଦ୍ରା, ବାୟୁ, ମୈଥୁନ ଏହି ଗୁର । ଏମନ୍ତେଣ ଷୋଳ କଳା ଚନ୍ଦ୍ରକୁ ଆବୋର ॥ ସୂର୍ଯ୍ୟର ଯେ ଷୋଳ କଳା ମନଦେଇ ଶୁଣ । ଚେତନା, ତରଙ୍ଗ, ତାରଣ ଏ ମୋହ ଜାଣ ॥ ଆଶା, ହେତୁ, ପରଗ୍ରହ, ବୁଦ୍ଧି, କର୍ମ, କ୍ରୋଧ । ଚକ୍ଷୁଃ, ତୃଷ୍ଣା, ଏପରରେ ବାରକଳା ବୋଧ ॥ ଊର୍ମି, ଧର୍ମ, ଜ୍ୟୋତି, ଜ୍ୱାଳା ଏ ଗୁର ଅଟଇ । ଷୋଳକଳା ପୂର୍ଣ୍ଣ ସୂର୍ଯ୍ୟ ଶୁଣ ମନ ଭାଇ ॥ ଏ ଦୁଇ ମିଶାଇ ବାଣ୍ଟ ନିତ୍ତି ମିଳନ । ଏମନ୍ତେଣ ଚନ୍ଦ୍ର ସୂର୍ଯ୍ୟ କଳା ନିତ୍ୟପନ୍ଥ । ୧୦୫ । ଉପର ପାଟିର ଦନ୍ତ ଚନ୍ଦ୍ର କଳା କହି । ତଳ ପାଟି ସୂର୍ଯ୍ୟ ମିଶି ଭୋଗୁଛନ୍ତି ଦେହି ॥ ଚନ୍ଦ୍ରକଳା ସୂର୍ଯ୍ୟକଳା ବତିଶ ହୋଇଛୁ । ଅର୍ଦ୍ଧମାତ୍ରା ଠାରେ ଚଉଷଠିରେ ଖେଳୁଛୁ । ରେଚକ ଠାରୁ ଷୋହଳ କଳାରେ ନିର୍ମିତ । ପର ରଜ ଶଶ ବଦ ମିଶାଅ ସୁଚିତ ॥ ସିଦ୍ଧି ରସ୍ତୁ ଗୁର ବେଦ ଆବୃତ୍ତେ ଖେଳନ୍ତି । ଅର୍ଦ୍ଧ

ମାତ୍ରା ଓଁକାର ଅକ୍ଷରୁ ବହୁଛନ୍ତି ॥ ଏସବୁ ସଂଯୁକ୍ତ ହୋଇ ବତିଶ
ହୋଇଛି । ଚଉଷଠିରେ ରାଧାଙ୍କ କୋଳରେ ଶ୍ରୀବଂଶି । ୧୧୦ ।
ଯୁଗଳ ପାଦପଦ୍ମରେ ପ୍ରେମ ନ ହୋଇଲେ । କଦାଚିତ ନ ପାଇବ
ଏହା ଜାଣ ଭଲେ ॥ ଆବର ଶୁଣ ତୁ ମନ ସୁଧାମୃତ ମନ୍ତ୍ରି । ସତାଇଶ
ବ୍ରହ୍ମାଣ୍ଡକୁ କହିଦେବା ବାଛି ॥ ଆକାଶେ ଚନ୍ଦ୍ର ନିବାସ ବାୟୁ ଆପ
ତେଜ । ରହିଛନ୍ତି ଆବୃତ୍ତରେ ଧୀର ଚତୁର ପୂରି ॥ ବାୟୁ ଆପ
ସଂଯୁକ୍ତରୁ କଳ୍ପନାଏ ଜାତ । ଚଇତନ୍ୟ ପବନ ସେ ଖେଳଇ ସତତ ॥
ବ୍ୟାନ ବାୟୁ କଣ୍ଠ ତଟେ ଭସ୍ମ ହୋଇଅଛି । ଉଦାନ ବାୟୁ ହୃଦୟେ
ସଞ୍ଚାର କରୁଛି । ୧୧୫ । ଅପାନ ବାୟୁ ନାଭି ଦେଶେ ଆପାନର
ସ୍ଥାନ । ସପ୍ତଧାତୁ ଶିଖିଅଛି ଲୁ ଦୁବୁଦୁ ସ୍ଥାନ ॥ ପ୍ରାଣ ବାୟୁ ଲକ୍ଷ୍ୟ
ସ୍ଥଳେ ଗୋପ୍ୟ ନ ହୋଇଛି । ସମାନ ବାଇ ଗୁଦରେ ବସିଟି
ହୋଇଛି ॥ ନିତମ୍ବଠାରୁ ପାଦକୁ ନବ ଫଳା ଅଛି । ଠିକ କରି
କହୁଅଛି ଶୁଣ ଭୁଲ ବସ୍ତି ॥ ଅକଳତ ମନ ଧ୍ୟାନ ଶିଖୁବନ୍ଧ ସ୍ଥାନ ।
ଶବଦ ଧ୍ୱନି ଉଦାନ ଅଥର୍ବଟି ଜାଣ ॥ ଧନାରେ କଳାକୁ ଯୋଖ
ଅଚଳାସାଠକ । ପାଦପଦ୍ମ ସେବାକର କୃଷ୍ଣ ବାରି ଦେଖ ।୧୨୦।
ସକଳ ଅଇଶ ତେଜ ରାମ ପ୍ରୀତିକର । ନିତ୍ୟାନନ୍ଦଙ୍କୁ ଭଜିଲେ
ଚୈତନ୍ୟ କିଶୋର ॥ ମନଚନ୍ଦ୍ର ଯୋଖି ରଖ ନିଶ୍ଚଳରେ ରହି ।
ପ୍ରତେବ ଆୟୁଷ କର ଭ୍ରୂରୁ ଶିଖେ ଥାଇ । ଅନାହତ, ଜାଗ୍ରତନ୍ତି
ନିଷ୍ପତ୍ତି ଭୂଷଯ୍ୟ । ଭୂଅଗ୍ନି ରୁଦ୍ରାଗ୍ନି ବଜ୍ର ଅଗ୍ନିକି ମିଶାଅ ॥ ଅଷ୍ଟାଙ୍ଗ
ଯୋଗରେ ଭକ୍ତେ ହୋଇଥାନ୍ତି ଖେଳ । ପ୍ରେମ ଚେତା ରଖିଥାଅ
ସହସ୍ର କମଳ ॥ ଡାକୁଛି ସୋହଂସ ନାମ ଅକଳରେ ରହି । ମନଭେଦ
ଶର ଧରି ତତ୍ତ୍ୱ ଖୋଜ ଯାଇଁ ।୧୨୫। ଲଗାଇବୁ କମଳକୁ ଉଜାଣି
ଗୁମ୍ଫାର । ଜ୍ୟୋତିର୍ଗନନ୍ଦ ଅବ୍ୟୟ ପ୍ରଭୁ ନିରାକାର ॥ ଆକାର ହୋଇଣ
ପ୍ରଭୁ ଭକ୍ତେ ଦେଖା ଦିଅନ୍ତି । ଅଣାକାରରୁ ଆକାର ଅକଳତ ମୂର୍ତ୍ତି ॥

ଅଣାକାର ଆକାରକୁ କିଛି ଭିନ୍ନ ନାହିଁ । ସେହି ସେହି ଏହି ସେହି ଅନ୍ୟ କିଛି ନାହିଁ ॥ ନଜାଣି ଝଗଡା କରି ତର୍କାତର୍କି ହୋନ୍ତି । ଅହଂଗୁଣ ନ ଛାଡ଼ିଣ ବଡ଼ିମା ଦେଖାନ୍ତି ॥ ଝଗଡା କରି ଶେଷରେ ଫଳ ନ ଦେଖନ୍ତି । ଏପରି ତାହାଙ୍କ ଗୁଣ ଶୁଣ ଅନ୍ୟ ସନ୍ତ ।୧୩୦। ବ୍ୟସ୍ତ ଅବ୍ୟସ୍ତ ତହିଁରୁ ଜପରି ହୁଅଇ । ଦେଖି ଦେଖି ଅମୃତଟି ତହିଁରୁ ଝରଇ ॥ ଜ୍ଞାନୀମାନେ ମୋ ଚରଣ ଭ୍ରମର ପ୍ରକାରେ । ଜାଣି ଚୁମ୍ବନ୍ତି ପାଦକୁ ମଧୁ ପରକାରେ ॥ ସେ ପାଦ ଚୁମ୍ବନରେ ପାଇବୁ ସର୍ବ ଯଶ । ନିରନ୍ତରେ ଝରୁଅଛି ନାମ ସୁଧାରସ ॥ ସକଳ ଆଶା ତୁ ଛାଡ଼ି ରାମ ନାମ ଧର । ରାମ ସଙ୍ଗେ ରମିଲେ ପାଇବୁ ବଂଶୀଧର ॥ ସତ ମିଛ ତହିଁ ନାହିଁ ସର୍ବେ ଏକ ଜାଣ । ଗୃହଖାନ ଯାକ ସବୁ କୋଣାକରେ ଲୀନ ।୧୩୫। ଗୁରୁ ଆଜ୍ଞା ମାନ ବୃନ୍ଦେ । ଅଭିନ୍ନ ମୁରତି ଜେଠା ଦେଉଛନ୍ତି ଭାଇ ବୋଦ୍ଧଙ୍କ ପୀରତି ॥ ନୈମିଷ୍ୟାରଣ୍ୟେ ଚରଇ ହସ୍ତୀ ସଦା ରହି । ଆସନ ନ ଛାଡ଼ିଣ ଜ୍ଞାନ ସ୍ତମ୍ଭେ ରସ ଯାଇ ॥ ଅର୍ଦ୍ଧମାତ୍ରାଟି ଅମ୍ବିକା ଯୋଗମାୟା ହୋଇ । ଦେବକୀ ବୋଲିଣ ତାଙ୍କ ନାମ ଗୋଟି କହି ॥ ନନ୍ଦପୁର ଗୋଟି ଅଟେ ବୈକୁଣ୍ଠ ମଧ୍ୟର । ଯଶୋଦା କୋଳେ ବସି ଝୁଲନ୍ତି ବଂଶୀଧର ॥ ନନ୍ଦ ବାସୁଦେବ ଅଟେ ଅଣାକାର ପୁର । ଦ୍ୱାଦଶ ବନରେ ପରିକ୍ରମାଟି ତାହାର ।୧୪୦। ଅକାର, ଅନନ୍ତ, ଅବିନଶ୍ୱର, ଅବ୍ୟସ୍ତ । ଅମୀସ୍ତ, ତେଜ ସମ୍ପନ୍ନ, ଅନିର୍ବଚନୀୟ ॥ ଅବ୍ୟକ୍ତ, ଅନ୍ତର୍ଯ୍ୟାମୀ ଅନିରୁଦ୍ଧ ଅମୋଘ । ଅନନ୍ତକୀର୍ତ୍ତି, ଅଚ୍ୟୁତ, ଅଖଣ୍ଡ, ଅନଘ ॥ ଅଖିଳ ଧର୍ମର ସେତୁ ଅଖିଳ ପାଳକ । ଅଖିଳଦର୍ଶି, ଅଖିଳ ପାପ ବିନାଶକ ॥ ଅବ୍ୟକ୍ତ ଗୁଣମୟ, ଅକୃତାତ୍ମା ଅଜିତ । ଅଭୟ ବରଦାତା, ଅତର୍କ୍ୟ, ଅବ୍ୟାକୃତ ॥ ଅଖଣ୍ଡ ନନ୍ଦାନୁଭବ ସ୍ୱରୂପ, ଅକ୍ଷର । ଅବିନର୍କ, ଅବସ୍ତୁ ସ୍ୱରୂପ, ଅବିକାର ॥ ଅଦୃଷ୍ଟଦାତା, ଅବିନାଶୀ, ଅଚିନ୍ତମୀୟ । ଅଭିଷ୍ଟପ୍ରଦ, ଅନପେକ୍ଷ,

ଅମୃତମୟ ॥ ଅନାଥ ବନ୍ଧୁ ଅନନ୍ତ ଗୁଣର ସାଗର । ଅନନ୍ତ ଗୁଣସମ୍ପନ୍ନ ଅନାଦ୍ୟ ଅପାର । ଅଷ୍ଟାଙ୍ଗ ଯୋଗରୂପ, ଅଚିନ୍ତ୍ୟ ଅନିମିଷ । ଅବଧି ସ୍ୱରୂପ, ଅସଙ୍ଗତ ଅନିର୍ଦ୍ଦେଶ । ଅମାନ, ଅସଂସ୍କାର, ଅଦସ୍ତେ ଅଧିର । ଅମର୍ଜ୍ଜିତ, ଅଜଡ଼, ଅଶେଷ ଶେଖର ॥ ଅଶେଷାତ୍ମକ, ଅମଳ ନୟନ, ଅକ୍ଷୟ । ଅଧୀଶ, ଅଗାଧବୋଧ, ଅନନ୍ତ୍ୟ ଅଜ୍ଞେୟ ।୧୫୦। ଅପ୍ରତ୍ୟୂତ ସ୍ୱରୂପ, ଅଭ୍ରାନ୍ତ ଅଲୌକିକ । ଅହଂକାର ବର୍ଜିତ, ଅଖିଳ ପ୍ରକାଶକ ॥ ଅକାରଣୋପାଧି, ଅଧୋଗମନ ନାଶକ । ଅପରିତ୍ୟଜ, କାରଣ ଦେହ, ଅନୁଗ୍ରାହକ ॥ ଅଚ୍ୟୁତାତ୍ମା ଅଖିଳଶକ୍ତି, ଅକୁତୋଭୟ । ଅଧିଶ୍ୱରଦୈବତ, ଅସୀମ, ଅପଶ୍ରୟ ॥ ଅବ୍ୟକ୍ତଗତି, ଅଭିନ୍ନ ଅହଂତତ୍ତ୍ୱାତ୍ମକ । ଅଶେଷ ଶକ୍ତିଧାରି, ଅମଙ୍ଗଳ ହାରକ ॥ ଅବନିମଣ୍ଡଳେ ଅଟ ଅବଜ୍ଞେୟ ପତି । ଅରକ୍ଷଜନେ ଡାକନ୍ତି ଅଗତିର ଗତି ।୧୫୫। ଶୁଣିଲୁ ମନ ସଜନ ଅନାମ ସାଗର । ଆଜ ନ ଭ୍ରାନ୍ତ ଅଛଇ କହ ମୋ ଆଗର ॥ ଦ୍ୱାଦଶ ବାୟୁ ସାଧନ କାହାଣୀକୁ ଶୁଣ । ଶୀବ ପରମ ପୀରତି ଧର ଅନୁକ୍ଷଣ ॥ ଏ ସାଧନା ଅନାଦ୍ୟରୁ ଶଙ୍କର ଜାଣନ୍ତି । ଚଉବନ ଛନ୍ଦ ନ୍ୟପନରେ ମର୍ଜ୍ଜି ଛନ୍ତି ॥ ଏକପାଦଛନ୍ଦ ହେଲେ ଦ୍ୱିପାଦ ରହିବ । ହୁଅଂକାର କ୍ଷଅଂ ମଧ୍ୟେ ସମ୍ଭବ ହୋଇବ ॥ ସ୍ୱର ଦ୍ୱାରକୁ ରୋଧିବୁ ଯୋଗାସନେ ବସି । ଅଙ୍ଗନ୍ୟାସ କରନ୍ୟାସ ମାତୃକାକୁ ଘୋଷି ।୧୬୦। ପ୍ରଥମେ ତୋଳିବୁ ମନ ପରକ ଦ୍ୱାବିଂଶ । ଦ୍ୱିତୀୟେ କୁମ୍ଭକ ଯମ ଚଉଷଠି ରସ ॥ ତୃତୀୟେ ରେଚକ ଷୋଳ ସନ୍ଧିରେ ଖେଳିବୁ । ଚତୁର୍ଥେ ହାଟକ ପଦ୍ମେ ନଗାଡ଼େ କଳିବୁ ॥ ପଞ୍ଚମେ ସଞ୍ଜମ ଜାଳେ ନ ଡରିବୁ ପୁଣ । ମୁଷା ମଞ୍ଜାଣ ସେଠାରେ ହୋଇବେ ଏକଣ ॥ ମାର୍କଣ୍ଡସା ସୂକ୍ଷ୍ମ ପ୍ରାପ୍ୟେ ଚହିଁ ରନ୍ଧ୍ର ଦଶି । ଚହିଁ ଉପରେ କାରଣ ବ୍ରହ୍ମମୟ ମୂର୍ତ୍ତି ॥ ବ୍ରହ୍ମର ସେବା ଲୀଳାରେ ଜଳସି ହୋଇବୁ । ବକ୍ରୁତନ୍ତ୍ରାଦ୍ୟମୀ ହୋଇ ସେବା ସଜ୍ଜାଇବୁ ।୧୬୫।

ସେବାରେ ସଙ୍ଗ ହୋଇଲେ ଦାସ ବୋଲାଇବୁ । ବକ୍ଷୁଳଚ୍ଛାଦନ ରୂପ ନୟନେ ଦେଖିବୁ ॥ ଲୀଳା ପରିଶେଷରେ ବିରାଟ ଅଙ୍ଗେ ଲିପ୍ତ । ଆବ୍ରହ୍ମ ବ୍ରହ୍ମ ପର୍ଯ୍ୟନ୍ତ ଗର୍ଭରେ ସମ୍ଭୂତ ॥ ଅରୂପ ରୂପରୁ ଜୀବ ହୋଇଛନ୍ତି ବାହାର । ଏକ ବ୍ରହ୍ମ ସ୍ୱୟଂଦେବ ହୋନ୍ତି ଅବତାର ॥ ସହସ୍ର ଶୀର୍ଷଯାହାର ନ ଦେବା ଉପମା । ସହସ୍ର କିରଣ ଯାର କେ ଜାଣେ ତା ସୀମା ॥ ଏକ ଚକ୍ର ଅଟଇ ସପତ ବାଜି ଭିଡ଼ା । ମନପବନ ସାରଥି ଅଗ୍ରରେ ଦଉଡ଼ା ।୧୭୦। ସପତ ରଜ୍ଜୁରେ ବନ୍ଧା ହୋଇଛି ଅଶ୍ୱକୁ । ଦ୍ୱିଜକୃଷ୍ଣ ହୋଇଛନ୍ତି ସାରଥି ପଣକୁ । ଘଟ ନନ୍ଦଘୋଷ ରଥ ନୁହଇ କଳନ । ବାହ୍ମବାକୁ ବୃହନ୍ନାଗ ଅଟଇ ସୁଜନ ॥ ନନ୍ଦ-ଘୋଷ ରଥ ଗୋଟି ତୋ ଦେହ ଅଟଇ । ମନ ଅରଜୁନ ରଥେ ସାରଥି ବାହଇ ॥ ନନ୍ଦଘୋଷ ରଥେ କୃଷ୍ଣ ବିଜେ ହୋଇବାରୁ । ରଥଟି ଚକ୍ର ଅଛଇ ବିକୂଟ ଦୁଆରୁ ॥ ଆକାର ଉକାର ଆଦ ମକାର ଅଟନ୍ତି । ଭ୍ରୁରୁ ମଧ୍ୟେ ଗ୍ରହ୍ମିଁ ଦେଖ ଅନନ୍ତ ମୂରତି ।୧୭୫।

ଶ୍ଳୋକଃ

ମାଳାବର୍ଣ୍ଣ ବଳଦେବଂ ସୁଭଦ୍ରା ସୂକ୍ଷ୍ମରୂପିଣୀ ।
ଜଗନ୍ନାଥ ମେରୁ ସ୍ୱରୂପଂ ମାଳାଚକ୍ରଂ ନମୋ ନମୋଃ ॥

ଅନନ୍ତ ମାଳା ଅଟନ୍ତି ସୂକ୍ଷ୍ମ ସୁଭଦ୍ରୀକା । ମେରୁ ଅଟେ ଜଗନ୍ନାଥ ବିଗ୍ରହ ଏ ଏକା । ଚକ୍ର ଗୋଟି ସୁଦର୍ଶନ ଗୁରୁ ବୋଲାଇଲେ । ସିଂହାସନେ ଶୋଭା ଦିଶେ ମଳଗିରି ବର୍ଣ୍ଣିଲେ ॥ ହ୍ରୀଂ ଇଁ ବୀଜ ବଳଦେବ ଶ୍ରୀଂ ଇଁ ସୁଭଦ୍ରୀକା । କ୍ଲୀଁ ଇଁ ବୀଜ ଜଗନ୍ନାଥ ବିମୂର୍ତ୍ତି ବିଶାଖା ॥ ଧ୍ଲୀଇଁ ବୀଜ ସୁଦର୍ଶନ ଶକ୍ତି ସ୍ୱରୂପରେ । କ୍ରୀଡନ୍ତି ନିତ୍ୟ ଆନନ୍ଦେ ଚୈତନ୍ୟ ଅଙ୍ଗରେ ॥ ପ୍ରଣବ ବେଢ଼ିଅଛି ମଣ୍ଡଳାକାର ହୋଇ ହାତେ ଚଉକେ ହାତଟି ମୂର୍ଦ୍ଧନି କ କନ୍ଧ । ୧୮୦ । ଅନନ୍ତ ବୀଜ ଆକାର ଅଷ୍ଟି ଅଟେ ସେହି । ହକାରେ ସକାରେ ରହି ଖେଳ

କରୁଥାଇ ॥ ନବଖଣ୍ଡ ମେଦ୍ଦମ ଯେ ତା ଠାରୁ ଝରୁଛି । ନବଧା ଭକ୍ତି ସେଠାରୁ ପ୍ରକାଶ ପାଉଛି । ତର୍ବ୍ବି ସ୍ବର ପାଶରେ ସ୍ବର ବେଦ କହି । ଓମ୍ ଧୂମ୍ରେ ଜ୍ୟୋତି ଜ୍ବାଳା ସ୍ବର କଳା ରହି ॥ ରୁକ ପର୍ଯ୍ୟ ଶ୍ୟାମ ଅଥର୍ବଣ ବେଦ ସ୍ବର । ଅଜପା ଛନ୍ଦ ରହିଛି ଅଛି ଯତ୍ନକର ॥ ସିଦ୍ଧି ରସ୍ତୁ ସ୍ବରଷର ହେଉ ଦେଇ ଶୁଣ । ସିଇ ଅଟେ ଶାମ ବେଦ ଛିଇ ପର୍ଯ୍ୟ ଜାଣ ।୧୮୫। ରଅଟି ବଦନ କହି ରୁକବେଦ ଘର । ସୁଉଟି ଅଥର୍ବ ବେଦ ଶ୍ରବଣ ଭଣ୍ଡାର ॥ ଏମନ୍ତ ପ୍ରକାରେ ଗୃଢବେଦ ଏ ଅଟଇ । ବୁଝାଇ କହୁଛି ଶୁଣ ଗୁପତରେ ଥାଇ ॥ ସ୍ବର ବେଦ ପରେ ଅଟେ ଶିଶୁବେଦ ଘର । ଶିଶୁବେଦ ପୁରେ କୃଷ୍ଣ କରନ୍ତି ବିହାର ॥ ଏହି ସାର ଜ୍ଞାନ ଯୋଗ ବୁଝିଲୁ କୁମର । ଅମୃତ ରହସ୍ୟ ସାରସୁଧା ଭକ୍ଷକର ॥ ଗୁପତ ନିଗମ ଜ୍ଞାନ ଗୁପତରେ ଥିଲା । ଆର୍ଯ୍ୟ ଧର୍ମ ଅଟେ ଏହି ଜାଣ ତୁ ବାଉଳା ।୧୯୦। ବ୍ରହ୍ମଜ୍ଞାନ ଭେଦସୂତ୍ର ତାରେ ପ୍ରକାଶଇ । ଟଙ୍କଜ ପରି ଯାହାର ମନ ସଦା ଥାଇ ॥ ବିଶ୍ବାସ କରଣ ପୂତା ଦିଅ ଅଙ୍ଗବଳ । ତୁ ମୋର ବିଶ୍ବାସୀ ବୋଲି ବିଶ୍ବାସେ କହିଲି ॥ ଅଷ୍ଟ ଅଧ୍ୟା ରହସ୍ୟ ଶୁଣିଲୁ ମନ ରାଜା । ମନ ତୃପ୍ତ ହେଲେ କି ଏକରେ ଦୁଇ ସଜା ॥ ଷୋଳକଳା ଗୃଢବେଦ ନିସ୍ଥାନ ସାଧନ । ମୁଦ୍ରାଯୋଗ ଆଦି କରି କରିଲୁ ପ୍ରଛିନ୍ନ ॥ ପ୍ରଭୁ ପ୍ରତି କହିଲଇଁ ଆରେ ବାଇମନ । ନିଷ୍କାମେ ପ୍ରଭୁଙ୍କୁ ଦିଅ ଅର୍ପଣ କରିଣ । ୧୯୫ । ଏକଶତ ନବ୍ୟୁନବେ ପଦ ହେଲା ପୂର୍ଣ୍ଣ । ଶ୍ୟାମ ସୁନ୍ଦରଙ୍କୁ ରଖ ଦୟାରେ ଅକ୍ଷୁର୍ଣ୍ଣ ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ନିସ୍ଥାନ ମୁଦ୍ରାଯୋଗ ଷୋଳକଳା ସ୍ବରବେଦ କଥନେ ଶ୍ରୀ ସାରସୁଧା ଗୀତା ମନ ଚୈତନ୍ୟ ସମ୍ବାଦେ ନାମ ଅଷ୍ଟମ ଅଧ୍ୟାୟଃ ।

—*—

# ନବମ ଅଧ୍ୟାୟ

## ସାଧନା ବଖାଣ

| | | | | |
|---|---|---|---|---|
| ଙ୍ମ୍ରୀ | ୦ହ୍ମା | ଧର | ଅନାଦ୍ଧ ଖେଳ | ୧୬ |
| ଧ୍ମ୍ରୀ | ୧ସ୍ୱା | ଅଧର | ଆଖଖେଳ | ୮ |
| କ୍ଲୀଂ | ୩ ବଲ୍ଲଭସ୍ମ | ଅର୍ପଣ | ଜ୍ୟୋତିଗମ | ୭ |
| କ୍ଳି | ୨ ଗୋପୀ | ଆଶ୍ରୟ | ନାମଭେଦ | ୧୧ |
| ଙ୍ମ୍ଷ୍ମୀ | ୯ ଜନ | ଆସ୍ୱାଦନ | ଘଟରେ ଖପ ଧାରଣ | ୫ |

ଅନୁଭବ ସୂତ୍ର ସାରଂ

ମନ ଉବାଚ

ଜୟ ଜୟ ନାରାୟଣ ଶଙ୍ଖ ଚକ୍ରହସ୍ତ । ସିଦ୍ଧ ସୁତାଙ୍କର ତୁମ୍ଭେ ଅଟ ପ୍ରାଣନାଥ ॥ ପାତକୀ ଜୀବମାନଙ୍କୁ ତାରିବାର ଅର୍ଥେ । ବଳେକର ଅଛ ପ୍ରଭୁ ନୀଳ ପରବତେ ॥ ଅଷ୍ଟମ ଅଧ୍ୟା ରହସ୍ୟ ଶୁଣି ହେଲ ତୋଷ । ନବମ ଅଧ୍ୟାରେ ମନ ବଳାଇଲା ଆଶ ॥ ଚୈତନ୍ୟଙ୍କୁ ଚାହିଁ ମନ ପଚ୍ଛରେ ସଧୀରେ । ନବମ ଅଧ୍ୟାୟ ରହସ୍ୟ କହ ପ୍ରଭୁ ବାରେ॥ ନବଧା ଭକ୍ତି ଭାବକୁ କହି କର ତୋଷ । ଶୁଣିବାକୁ ଭୁଲ ମନ ବଳାଇଛୁ ଆଶ । ନବଧା ଭକ୍ତିରୁ ପୁଣି କେଉଁ ଭକ୍ତି ଶ୍ରେଷ୍ଠ । ସରସେ ବୁଝାଅ କହି ହେଉ ମନ ହୃଷ୍ଟ ॥ ଗତି କି ନ ମାଗିବାରୁ ଅଗତିଆ ନାମ । ହେଇଅଛ ନାଥ ତୁମ୍ଭ ଅଗତିଆ ଧନ ॥ ସ୍ୱର୍ଗେ ବା ନରକେ ରଖ ଘୋଷୁ ତୁମ୍ଭ ନାମ । ଏତିକ ମାଗୁଣି ପ୍ରଭୁ କରଇ ଦାଇନ୍ୟ ।

ଚୈତନ୍ୟ ଉବାଚ

ଏକ ଲକ୍ଷ କରି ଶୁଣ ସୁଚିତ୍ତ ମନର । ଅଥବେ ସାରଥି ହେଲେ କର୍ମେ ଜନୁସାର ॥

ଶ୍ଲୋକଃ

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟ ସଖ୍ୟମାତ୍ମା ନିବେଦନଂ ॥

ହରିରସ ଯେଉଁସ୍ଥାନେ ଗାବନ୍ତି ଭକତେ । ଶ୍ରୁତି ଡେରି ରହିଥିବୁ ହରଷେ ସୁଚିତ୍ତେ ।୧୦। ପ୍ରେମାନନ୍ଦେ ଲୋମୋଦ୍‌ଗମ ହେବ ଯେତେବେଳେ । ସ୍ମରଣ କରିଉଥିବୁ ପ୍ରଭୁଙ୍କୁ ସେକାଳେ । ଶ୍ରୀହରି ନାମ କୀର୍ତ୍ତନ ଯେ ସ୍ଥାନେ ଦେଖିବୁ । ପ୍ରେମଭରେ ସଂକୀର୍ତ୍ତନେ ମନ ମଜ୍ଜାଇବୁ । ସ୍ମରଣ ସମୟେ ମନ ସଞ୍ଜମରେ ଥିବୁ । ମନ୍ତ୍ର ମଧ୍ୟେ ଚିତ୍ତ ରଖି ଭାବେ ବିଳସିବୁ ॥ ଚରଣ ସେବାରେ ଯେବେ ହେବୁ ଅଗ୍ରସର । କାଳକୁ ଘଉଡ଼ିବୁ ପଞ୍ଚାଶ ବାହାର । ପୂଜାର ବିଷୟେ ଯେବେ ମନ ଜଡ଼ ଥିବ । ଷୋଡଶୋପଚାର ପୂଜା ହେଇ କର ଠାବ ।୧୫। ଦାସ ଭାବ ଯେବେ ତୋର ଦେହେ ଅଙ୍କୁରିବ । ଘଟ ଆପଣ କରିବୁ ଆଶା ନ ରହିବ ॥

ଶ୍ଲୋକଃ

ଶ୍ରଦ୍ଧାପୁଷ୍ପଂ ମନଂ ମାରଂ ସୁମନଂ ଧୂପ ଦୀପକଂ ।
ଅନାହତ ଘଣ୍ଟା ନାଦେନଂ ସାପୂଜା ପରମେଶ୍ୱରଂ ॥

ଶ୍ରଦ୍ଧା ପୁଷ୍ପ ମନ ଜଳ ସୁମନ ଧୂପରେ । ଅନାହତ ଘଣ୍ଟା ନାଦେ ସେବ ସୁଚିତ୍ତରେ ॥ ବର୍ଣ୍ଣନାରେ ଯେବେ ତୋର ଚିତ୍ତ ଜଡ଼ିଥିବ । ଘଟରେ ଘୂରିଉଥିବୁ କର ଅନୁଭବ ॥ ଦାସ୍ୟଭାବେ ଯେବେ ତୋର ମନ ଅଙ୍କୁରିବ । ଆଜ୍ଞା ଅବଜ୍ଞା ନ କରି କରିଇବୁ ଠାବ ॥ ସନ୍ତୁଷ୍ଟ ଚିତ୍ତ ଭାବେ ଭକ୍ଷ୍ୟ ରଖି ଯୋଗାଇବୁ । ଦାସ ଦଶ ଦୋଷ କ୍ଷମା କରନ୍ତୁ ବୋଲିବୁ ।୨୦। ସଖା ଭାବ ସଖା ସଙ୍ଗ ସଖା ଆଚରଣ । ଆତ୍ମା ବଳି ଦେଇ ଆତ୍ମା କର ସମର୍ପଣ ॥ ନବଧା ଭକ୍ତି ରହସ୍ୟ ଶୁଣିଲୁରେ ମନ । ପୂର୍ବରୁ ସୁକୃତ ଥିଲେ ଅଙ୍ଗରେ ଏ ମାନ । ନବଧା ଭକ୍ତିରେ ହରି

ଲୀଳା ବିଳସନ୍ତି । ସାକାର ସ୍ୱରୂପେ ପ୍ରଭୁ ଭକ୍ତେ ଠାକ ଡ଼ୀନ୍ତି ॥ ନବଧା ଭକ୍ତିରେ କର୍ମ କରୁ କରୁ ଯେବେ । ଜ୍ଞାନ ଅଙ୍କୁର ଉଠିବ ତୋ ଦେହରୁ ତେବେ ॥ ସକଳ ବସ୍ତୁରେ ତୋର ସମଭାବ ହେବ । ସ୍ଥୂଳ ନୟନଟି ବିପରୀତ ଭଜ ଯିବ । ୨୫ । ନିତ୍ୟ ଶୁଦ୍ଧ ନିରାକାର ସଙ୍ଗେ ସଙ୍ଗ ଦେବୁ । ନିଷ୍କାମ କରମେ ନିତ୍ୟାନନ୍ଦଙ୍କୁ ପାଇବୁ ॥ ତାହାର ଚରିତ ଶୁଣି କର୍ଣ୍ଣେ ଦେଇ ମନ । କ୍ଷଣେ ନିମିଷେ ଭଜିଲେ ନଥାଇ ଦୁର୍ଗତି ॥ ଅନାଦିଆଦି ଗୋବିନ୍ଦ ବୋଲନ୍ତି ସନ୍ତଙ୍କୁ । ଆପେ ଆପଣେ ନିର୍ମାଣ କଲନ୍ତିହେ ତାଙ୍କୁ ॥ ଛପନକୋଟି ଜୀବଙ୍କୁ ତାରିବାର ପାଇଁ । ମାଳଶୈଳେ ବୁଦ୍ଧ ଅବତାରେ ଛନ୍ତି ରହି । ଅଣିମାରୂପ ସେ ନାମ ଅବନା ମନ୍ଦିରୁ । ଝରୁଛି କଲ୍ଲୋଳ ସୁଧା ହଂକାରସ୍ୱରରୁ ॥ ନିର୍ଲିପ ପୁରୁଷ ସେହୁ ଠୁଳ ଶୂନ୍ୟବାସୀ । ନିଃଶବଦ ପୁରେ ଭୁଞ୍ଜି ଅସ୍ପର୍ଶେ ବିଳସୀ ॥ ଆଚ୍ଛାଦି ଧରି ଅଛନ୍ତି ଜଗତ ଲୋକଙ୍କୁ । ପତିତ ପାବନ ବାନା ଦେଖାଇଁ ଜୀବଙ୍କୁ । ଅଣାକାର ପୁରୁଷ ଅଟନ୍ତି ଶୂନ୍ୟ ରୂପୀ । ଗୁମ୍ଫି ରହିଛନ୍ତି ଘଟବାସୀ ଘଟେ ବ୍ୟାପି ॥ ଚେତା କରି ଚେତାଇଲେ ଚତୁର ଚିତ୍ତକୁ । ଚିନ୍ତାମଣି ଚର୍ଣ୍ଣେ ତୋର ଭାବନ୍ତି ଭାବକୁ ॥ ଚେତାଟି ଚୈତନ୍ୟ କହି ଜୀବଅଟେ ଭ୍ରମ । ହଂସ ଅସ୍ତୁ କରାଇଲେ ବୃକ୍ଷସିଦ୍ଧ ଚୈତନ୍ୟ ।୩୫। ଚେତା ଥାଉ ଥାଉ ଘଟେ ଖୋଜ ଚେତା ବୁଦ୍ଧି । ଜନନୀ ଜଠର ନାମ ଭେଦ କରି ସିଦ୍ଧି ଫୁକାନାଳ ଲହରୀର ମଧ୍ୟେ ସରୋବରେ । ଫୁଟିଛି ସହସ୍ର ଦଳ ଧରି ଯାଇ ବାରେ ॥ ଆଠ ହଜାର ଆଠଶ ଅଠାଇଶ ବାଟେ । ବିହରନ୍ତି କୃଷ୍ଣଚନ୍ଦ୍ର ସ୍ଥୂଳ ସୂକ୍ଷ୍ମଘଟେ ॥ ବେଦମାନେ ଗୋବତ୍ସା ରୂପରେ କ୍ଷୀର ଖାନ୍ତି । ନନ୍ଦରାଜା ସୁତ ଦୁଗ୍ଧ ଦୋହନ କରନ୍ତି ॥ ଛନ୍ଦକୁ ଛନ୍ଦ ପାରିଲେ ଗାବ ବନ୍ଧା ହେବ । ନିତ୍ୟାନନ୍ଦେ ବିଳସିଲେ ଚୈତନ୍ୟ ପାଇବ ।୪୦। ଧର୍ମ୍ମବେଦ ଅର୍ଗଳରେ ଗଳଣ ପଶିବୁ । ଭିଦ୍ୟଂସ୍ତ୍ୟ

ମଧ୍ୟାହ୍ନ ବାଣ ସେବା ସମର୍ପିବୁ ॥ କାଳକୁ ବାହାରେ ଥୋଇ ପଶିବୁ ସଧୀରେ । ଗୁନଆ ଛନକା କାଟି ଅର୍ପଣ ପ୍ରେମନ୍ତର ॥ ଉବସିନ୍ଧୁ ତରଣୀରେ ଯେବେ ଯିବୁ ତର । ତତ୍ତ୍ୱକୁ ଥୟ କରଣ ଚିନ୍ତ ତୁ ବକାଙ୍ଗ । ରଙ୍ଗ ପସରରେ ଯେତେ ଭୁଲିବୁରେ ମନ । ଅଳପ ବୟସେ ଘଟ ଜୀର୍ଣ୍ଣ ହେବ ଜାଣ ॥ ଜଗତ ବ୍ୟାପକ ସ୍ଥାନେ ଜ୍ଞାନେ ଯାଇ ଧର । ଅଣ ଘର ଅଟଇଟି ଜ୍ଞାନର ଭଣ୍ଡାର ।୪୫। ଦୋମୁହାଁ ସର୍ପ ସେଠାରେ ଗରଜ ଘୁମ୍ମୁଛି । ପଦ୍ମତୋଳା ଗାଇ ତୁହି ଖେଳାଇବୁ କହି ॥ ସପତ ଧାତୁ ମଧରେ ଅଷ୍ଟଧାତୁ ଅଛି । ସପତ ଫଣା ବିଘଟ ଶିରରେ ଢାଙ୍କିଛି ॥ ତୁ ମୋର ବିଶ୍ୱାସୀ ବୋଲି ଚେତାଇ କହୁଛି । ସପତ ଧାତୁର କଥା କହିଦେବା ବାକି ॥ ବେନ କର୍ଣ୍ଣ ବେନ ଚକ୍ଷୁ ବେନ ନାସା ଓଷ୍ଠ । ଏ ସାତ ଧାତୁକୁ ତ୍ରିକୋଣରେ ଉପବିଷ୍ଟ ॥ ଉଳ ସୂତ୍ରରେ ବନ୍ଧାଣି ଗଢ଼ିଅଛି ପୁଣି । ବିଘଟ ସୂତ୍ରରେ ଗନ୍ଧ ଧ୍ୱଂସ ସୂତ୍ର ଘେନ ।୫୦। ସର୍ବ ବେଦ ବ୍ରତ ଯଜ୍ଞ ଆତ୍ମା ଜ୍ଞାନ ସାର । ସର୍ବକର୍ମ ଛାଡ଼ି ଆତ୍ମା ଯଜ୍ଞରେ ବିହର ॥ ଏ ଅଟ୍ଟ ଉତ୍ତମ ଯଜ୍ଞ ଆତ୍ମାର୍ପିତ କର । ଜ୍ଞାନ ବିଶୁଦ୍ଧ ଅଟଇ ମୁର୍ଖେ ବିଷଧର ॥

## ମନ ଉବାଚ

କୃତ କୃତହୋଇ ମନ ଚରଣେ ପଡ଼ଣ । ମାତାଙ୍କ ପୂର୍ବ କର୍ମସୁଁ ପାଇଲି ସୁଜ୍ଞାନ ॥ ସୁମନେ ମନ ଦେଇଣ ପୁଚ୍ଛାକରେ ମନ । ଭକତି ଯେଉଁ ପ୍ରକାର କହ ଗୁରୁ ବ୍ରହ୍ମ ॥ କିପରି ହୋଇବ ଭକ୍ତ କହନ୍ତୁ ବତାଇ । କାହାକୁ ପୁଚ୍ଛିବି ସ୍ୱାମୀ ତୋ ବିନା କେ ନାହିଁ ।୫୫। ନବ ହୀପରେ ଖେଳୁଛ ଭକତ ମେଳରେ । ମୂକ ଡାକକୁ ଶୁଣନ୍ତୁ ପୁଚ୍ଛଇ ସଧୀରେ ॥ ସାଯୁଜ୍ୟ, ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ କହି । ଏ ଗୁରି କାରଣ ପ୍ରଭୁ ଦିଅନ୍ତୁ ବତାଇ ॥ ବୁଝାଇ କହନ୍ତୁ ନାଥ ଏଗୁରି ଲକ୍ଷଣ । ରଙ୍ଗ ଅଧରେ ହାସନ୍ତି ପ୍ରଭୁ ଶ୍ରୀ ଚୈତନ୍ୟ ॥

## ଚୈତନ୍ୟ ଉବାଚ

ଶୁଣ ତୁ ମନ ସଜନ ଏଥିର କାହାଣୀ । ମୁକତିର ସ୍ତର ଚୋଟି ଶାଖା ଅଟେ ପୁଣି ॥ ସାୟୁଜ୍ୟ, ସାଲୋକ୍ୟ, ସାମୀପ୍ୟ, ସାରୁପ୍ୟ ସ୍ତର । ଏ ଚାରି ଅଟନ୍ତି ମୁକ୍ତି ପଥ ଅଧିକାରୀ । ୭୦ । ପ୍ରତି ପ୍ରତି କହୁଦେବା ଶୁଣ ମନ ବାଇ । ଭକ୍ତି ଜନ୍ମିବା କାରଣ ଏ ସ୍ତରରେ ଥାଇ, ସାୟୁଜ୍ୟ ରହସ୍ୟ ପଦ କଳନା ନୁହଇଁ । ଭକ୍ତ ଭଗବାନ, ସାଧୁ ଏକ ହୋଇ ଥାଇ ॥ ପ୍ରାଣ ପ୍ରୟାଣ ସମୟେ କୃଷ୍ଣ ଅଙ୍ଗେ ଥିବ । ଇତି ସଂସାରେଣ ଆଉ ଜନମ ନୋହିବ ॥ ଏପରି ହେବ ସାଧକ ସାଧନା ଲଗାଇ । ହଂସରେ ସୁହଂସ ହୋଇ ସଦା ଜଡ଼ିଥାଇ ॥ ସାୟୁଜ୍ୟ ରହସ୍ୟ ଧ୍ୟାନ ଶୁଣିଲୁଟି ମନ । ସାଲୋକ୍ୟ ଭକ୍ତିର କଥା କର ତୁ ଶ୍ରବଣ । ୭୫ । ବହୁ କଷ୍ଟେ ମୁନିମାନେ ତପସ୍ୟା କରନ୍ତି । ଅନ୍ତଃକାଳେ ମୋ ଅଙ୍ଗରେ ଲିପିତ ହୁଅନ୍ତି ॥ ଜାଗ୍ରତ ସ୍ୱପ୍ନରେ ରହି ଆତ୍ମା ବନ୍ଧ ମୋକ୍ଷ ଦୃଷ୍ଟି କ ନ ଜାଣଇ । ମାୟା ମାତ୍ର ଅଟଇ ଆତ୍ମାକୁ ଆତ୍ମା ଧ୍ୟାଇ ॥ ଦମ୍ଭ ସମ୍ଭବ ତାହାର କହୁଁ ହିଁଟି ନାହିଁ । ଏଣୁ ସଦା ନିରାକାର ବସ୍ତୁ ନିତ୍ୟେ ନାହିଁ ॥ ସାଲୋକ୍ୟ ଭକ୍ତିଟି ଏବେ ଶୁଣିଲୁରେ ମନ । ସାମୀପ୍ୟ କାହାଣୀ ଏବେ କରିବା ପ୍ରଚ୍ଛିନ୍ନ ।୮୦। ସାମୀପ୍ୟ କାହାଣୀ ଏବେ ମନଦେଇ ଶୁଣ । କୃଷ୍ଣଙ୍କ ସଙ୍ଗତେ ମୁହିଁ ଥିବ ନିଶି ଦିନ । ସେ ନବ କିଶୋର ରୂପ ନିତ୍ୟେ ଦେଖୁଥିବ । ଏ ଅଟେ ସାମୀପ୍ୟ ଭାବ ମନେ ଥିବୁ ଭାବ । ଏପରି ଲକ୍ଷଣ ଯେହୁ ଭକତି କରଇ । ଶ୍ରୀକୃଷ୍ଣ ଅଙ୍ଗେ ସଙ୍ଗ ଅଟଇ ଟି ସେହି । ସାମୀପ୍ୟର ସୂକ୍ଷ୍ମ ଅର୍ଥ ଶୁଣିଥିଲୁଟିରେ ମନ । ସାରୂପ୍ୟ କାହାଣୀ ଶୁଣ ଅଥବେ ଢେ଼ରଣ ॥ ସାରୂପ୍ୟ ଭକତି ଯାର ହୃଦେ ଜାଗରଣ । ବସ୍ତୁ ତୁଲ୍ୟ ହେବ ବୋଲି ତାର ବାଞ୍ଛା ଜାଣ । ୮୫ । କୃଷ୍ଣଙ୍କ ସ୍ୱରୂପ ଅଙ୍ଗ ସୁଗୁଣ ସୁନ୍ଦର । ଭିନ୍ନ ନ ଥିବ ତାଙ୍କର ଆତ୍ମ ବ୍ୟବହାର ॥ ପ୍ରେମ ହୃଦ କାମନାହ୍ଲାଦମ ଭାବ

ହୋଇ । ସାରୁପ୍ୟର ସଧାନଟି କହିବା ବୁଝାଇ ॥ ଶରତ ଶୀତ ଖଗ୍ର ବର୍ଷାରେ କଷ୍ଟ ସହି । ଦଶ ଇନ୍ଦ୍ରିୟ ନରୋଧି ସାଧନ କରଇ ॥ ଘଟ ମୂକତ୍ତ ହୁଅଇ ଶୁଣ ଆରେ ମନ । ପ୍ରେମ ଭକ୍ତି କ ଏମାନ ସମନ୍ତୁଦେଁ ଜାଣ ॥ ପ୍ରେମରସେ ଆର୍ଦ୍ର ଯେବେ ନ ହୁଏ ହୃଦୟ । ପ୍ରେମାନନ୍ଦେ ନ ସେବିଲେ ନାହିଁ ଶାନ୍ତିମୟ ॥ ପ୍ରେମରେ ତାରକ ବ୍ରହ୍ମ ଭଜ ଆରେ ମନ । ନ ଦଣ୍ଡିବ କାଳଯମ ଅଚ୍ୟୁତ ବଚନ ॥ ନିଦ୍ରା କ୍ଷୁଧା ତୃଷା ଶ୍ରମ କର ତୁ ବାରଣ । ଜରା ରୋଗ ମୃତ୍ୟୁ ଭୟ ଛେଦ ବାଇମନ ॥

ଶ୍ଳୋକଃ

ଓଁ ମ୍ ସତ୍ୟ ନାରାୟଣକୃଷ୍ଣନାମନାମଂଧିମ୍ନଃ ସୁମୁର୍ତ୍ତିକାନ୍ତିଯସ୍ୟନତ୍ୟମ୍ ॥
ଗୁହାଂ ଚନଭିଦ୍ୟ ହୃଦନ୍ତରସ୍ଥାଂ । ତତ୍ରାଧିକାରଃ ଶମନଶ ନାସ୍ତି ॥

ସତ୍ୟନାରାୟଣ କୃଷ୍ଣ ନାମଟି ଯାହାର । ହୃଦୟ କନ୍ଦରେ ଭେଦ କର ବାରବାର ॥ କ ଭୟ କ ତୃଷା ଶ୍ରମ ଏ ଜଗତ ତୋର । ହରଷେ ସରମେ ଶାନ୍ତ ଚୈତନ୍ୟ ପ୍ରଚୁର ॥ ଧନମାନ କୁଳଶୀଳ ଗୃହ ପରିବାର । ସଙ୍ଗେ ଯିବେ ନାହିଁ ଆଗୁ ହୁଅ ଆଗୁସାର । ୯୫ । ସ୍ମର କୃଷ୍ଣ ଜପ କୃଷ୍ଣ ଗାଅ କୃଷ୍ଣ ନାମ । କୃଷ୍ଣାନନ୍ଦେ ଆତ୍ମା କର ଯଜ୍ଞରେ ପ୍ରଦାନ ॥ କୃଷ୍ଣ ଶାନ୍ତ ଶାନ୍ତାକୁରେ ହୁଅ ଆତ୍ମା ରାମ । ରମାରେ ରମିଲେ କୃଷ୍ଣ ହେବେ ସୁପ୍ରସନ୍ନ ॥

ଶ୍ଳୋକଃ

ସହସ୍ର ଶୀର୍ଷଃ ପୁରୁଷେ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ନଶ୍ୟତୋବ୍ୟାପ୍ୟତ୍ୟତ୍ତିଷ୍ଠ୍ୟାଦ୍ଦିଶାଂଗୁଳମ୍ ॥

ଅନନ୍ତ ଶ୍ରୀକୃଷ୍ଣ ନାମ ସହସ୍ର ଆକାର । ଏକଇ ବ୍ରହ୍ମରୁ ଜାତ ସହସ୍ର ପ୍ରକାର ॥ ବିଷ୍ଣୁ ସ୍ୱସ୍ୱଂରୂପ ସହସ୍ର ପ୍ରକାରେ । କେ ଅନ୍ତ କରି ପାରିବ ଏକହିଂଶ ପୁରେ । ଭକ୍ତ ଭାବ ରୂପ ଭେଦ ନାନାକାର ହୋଇ ଏକ ପ୍ରଭୁ କୃଷ୍ଣଚନ୍ଦ୍ର ଚଇତନ୍ୟ ଦେହ । ୯୦ । ଏକଇ

ଅନନ୍ତ କୃଷ୍ଣ ସ୍ୱୟଂ ଭଗବାନ । ଶକ୍ତି ଭେଦେ ଭିନ୍ନ ତାଙ୍କୁ ଦେଖଇ ଅଜ୍ଞାନ ॥ ଅନନ୍ତ ଶକ୍ତିର ମଧ୍ୟେ ଏକ କୃଷ୍ଣଚନ୍ଦ୍ର । ଅଭେଦ ନୟନେ ଜ୍ଞାନୀ ସଦା ନିତ୍ୟାନନ୍ଦ ॥ ଅନନ୍ତ କୃଷ୍ଣର ନାମ ଶୁଣିଲୁରେ ମନ । କେତେ ଖୋଳ ପଚ୍ଛୁରୁଛୁ ଗଣ୍ଡି କଥାମାନ ॥

ମନ ଉବାଚ

ପୁନଃପୁନ ମନରଜା ଚରଣେ ପଡ଼ଣ । ସୂକ୍ଷ୍ମ ଚକ୍ଷୁ ଦେଇ ରଖ ଶ୍ରୀରଙ୍ଗାଚରଣ ॥ ଜ କରମ କଲେ ତବ ଦାସ ଦାସ ହେବି । ପ୍ରଚ୍ଛିନ୍ନରେ ବୁଝାଇଲେ ହେବ ଅନୁଭବ ।୯୫। ଆବର ଅଷ୍ଟ ସଖିଙ୍କ ସେବା ବୁଝାଇବ । ଶୁଣିବାକୁ ମନରେ ତ ବଳାଇଛୁ ଭାବ ॥ ବାଉଳା ଜୀବର ମନ ବାଇଲେ ରହୁଛି । ଶ୍ୱେତ ପଦ୍ମ ଡୋଳା ମଧ୍ୟେ ରଖନ୍ତୁ କହୁଛି ॥ ଘଟ୍ଟ ବୁଲୁଲିଆ ବାକ୍ୟ ଅନ୍ତର କରଇ । ତବ ପାଦପଦ୍ମ ସେବା ଦିଅନ୍ତୁ ବତାଇ ॥

ଚୈତନ୍ୟ ଉବାଚ

ପଚ୍ଛରିଲୁ ଭୁଲମନ ଦାସର ବ୍ୟବସ୍ଥା । ଆବର ଅଷ୍ଟ ସଖିଙ୍କ ସେବାର ସମସ୍ୟା ॥ ଆଦ୍ୟରେ ଦାସର କଥା କହିବା ବୁଝାଇ । ମନ ଦେଇ ଶୁଣ ଭୁଲ ଦେବଇଁ ବତାଇ ।୧୦୦। ଏ ଘଟେ ପ୍ରକୃତିମାନ ବିହାର କରନ୍ତି । ଇନ୍ଦ୍ରିୟକୁ ଉଚ୍ଚାରଣ କୁପଥେ ପକାନ୍ତି ॥ ମନରେ ଚେତ ତୁମେନେ ବାନ୍ଧିଥାଅ ଯେବେ । ପ୍ରକୃତିଗଣଙ୍କ ବଶ ହୋଇବଟି ତେବେ ॥ ମନମତ୍ତ ହସ୍ତୀଟିକି ବାୟୁରେ ବାନ୍ଧିଲେ । ବାୟୁକୁ ସ୍ଥିର କରିଅ ଭୁରୁ ବଙ୍କୁନାଳେ ॥ ପ୍ରକୃତ ମନପବନ ଏକଠାରେ ହେଲେ । ଅନ୍ଧାର ଘରେ ମାଣିକ୍ୟ ଦିଶିବ ସେ କାଳେ ॥ ପ୍ରେମମୟ ପ୍ରତିମାଟି ନୟନେ ନାଚିବ । ଯେଣିକି ଚାହିଁଲେ ତେଣେ ଦିଶିବେ ମାଧବ।୧୦୬। ତେବେ ତୁ ଦାସ ହୋଇବୁ ଭଲେ ହେତୁ କର । ଅଷ୍ଟ ସଖିଙ୍କର ନାମ ଶୁଣିଲେ ତୁମର ॥ ପଦ୍ମନେତ୍ରୀ, ପଦ୍ମିନୀ, ପାବନୀ, ପରିମଳା । ପିଙ୍ଗଳା, ପିଚୂଳା, ପଦ୍ମମୁଖୀ ପଦ୍ମତୋଳୀ ॥ ଏହି ଅଷ୍ଟ ସଖି ଅଷ୍ଟ

ଢଳେ ବିହରନ୍ତି । ଯୁଗେ ଯୁଗେ ରସ କରି ସେବା ନଯୋଗାନ୍ତି ॥ ଶ୍ରୀ ସମ୍ପ୍ରଦା ଅଷ୍ଟ ସଖି କହିବା ପ୍ରକାର । ଆବର ଅଷ୍ଟ ସଖିଙ୍କ ସେବା ସମାଚାର ॥ ସୁହଂସୀ ଶ୍ୟାମଳା ସୁଲକ୍ଷଣା ସୁବଙ୍କାକ୍ଷି । ତେଜରୁ ପାଇବ ସିଧା ଚନ୍ଦ୍ରରେଖା ଆକ୍ଷି ।୧୧୦। ଚନ୍ଦ୍ରାବଳୀ ଆକ୍ଷି ଏହି ଅଷ୍ଟ ସଖି ଜାଣ । ସଦାସ କରନ୍ତି ନିତ୍ୟସ୍ଥଳରେ ରହିଣ ॥ ଲୀଳାରେ ବିଳାସ ହୋଇ ରସେ ବିହରନ୍ତି । ସଖି ହୋଇ ସଖି ସେବା ସୁରସେ ସେବନ୍ତି ॥ ଆବର ଅଷ୍ଟସଖିଙ୍କ ନାମକୁ କହିବା । କୋହିର ମନୁ ସଂଶୟ ଛୁଟାଇଣ ଦେବା ॥ ଶତରୂପା ସୁଲକ୍ଷଣା ସୁଲଗ୍ନା ସୁକାନ୍ତି ॥ ସୁଦୁର୍ଗା ସୁଭ୍ରାନ୍ତି ଆଉ ସୁରେଖା ସୁରକ୍ଷି ॥ ମାଧବାଚାର୍ଯ୍ୟ ସଂପ୍ରଦାସଦା ରସିଥାନ୍ତି । ଏହି ଅଷ୍ଟସଖି ସଦା ରସେ ବିଳସନ୍ତି ।୧୧୫। ମୋହିତ ହୋଇଣ ରସେ ଅନ୍ୟ ନ ଜାଣନ୍ତି । ଶ୍ରୀକୃଷ୍ଣଙ୍କ ସେବା ପାଇ ଦେହି ପାଶୋରନ୍ତି ॥ ପୁଣି ଅଷ୍ଟ ସଖିଙ୍କର ନାମ କହିଦେବା । ଘଟରୁ ତୋହର ଭ୍ରାନ୍ତି ଖଣ୍ଡନ କରିବା ॥ ଲଳିତା ବିଶାଖା ଆକ୍ଷି ଚମ୍ପକ ଲତିକା । ଚିତ୍ରା ବନ୍ଦ୍ରରେଖା ତୁଙ୍ଗବିଦ୍ୟା ସୁଦେବୀକା ॥ ରଙ୍ଗଦେବୀକା ସହିତେ ଅଷ୍ଟ ସଖି ଜାଣ । ଯେ ଯାହା ସେବାରେ ନିତ୍ୟ ସେବୁଥାନ୍ତି ପୁଣ ॥ ଆବର ଅଷ୍ଟମଞ୍ଜରୀ କହିବା ବୁଝାଇ । ଅଷ୍ଟମଞ୍ଜରୀଙ୍କ ସେବା କଳନା ନୁହଇ ।୧୨୦। ଲବଙ୍ଗ ମଞ୍ଜରୀ ରୂପମଞ୍ଜରୀ ଖଟନ୍ତି । ରତି ମଞ୍ଜରୀ ଭଦ୍ର ମଞ୍ଜରୀ ଘେରିଥାନ୍ତି ॥ ବିଳାସମଞ୍ଜରୀ କେଳି ମଞ୍ଜରୀ ସହିତ । ଅଶୋକମଞ୍ଜରୀ ମଞ୍ଜୁଳାଳୀ ମଞ୍ଜରୀ ତ ॥ ଏଅଷ୍ଟ ମଞ୍ଜରୀଙ୍କର ଅଲୌକିକ ସେବା । ଆଚର ଅଷ୍ଟ ମଞ୍ଜରୀ କି ଉପମା ଦେବା ॥ ଅଷ୍ଟ ମଞ୍ଜରୀଙ୍କ ନାମ ଶୁଣ ମନଦେଇ । ଅକଳିତ ଲୀଳା ତାଙ୍କ କଳନା ନୁହଇ ॥ ଶ୍ରୀରସ ମଞ୍ଜରୀ ଗୁଣ ମଞ୍ଜରୀ ଏ ବେନି । ଲୀଳାମଞ୍ଜରୀ ଶ୍ରୀବିଳାସ ମଞ୍ଜରୀ ପୁଣି । ।୧୨୫। ଆବର କୁଳ ମଞ୍ଜରୀ ମଦନମଞ୍ଜରୀ । ପଦ୍ମମଞ୍ଜରୀ ସୁଧାମୁଖୀ ମଞ୍ଜରୀ ଘେରି । ଏ ଅଷ୍ଟ ମଞ୍ଜରୀ ଅଷ୍ଟଦଳରେ କ୍ରୀଡ଼ନ୍ତି । ଶ୍ରୀକୃଷ୍ଣଙ୍କ ଅଙ୍ଗ ସଙ୍ଗ ହୋଇ ବିଳସନ୍ତି ॥ ଆଉ

ଅଷ୍ଟ ମଞ୍ଜରୀଙ୍କୁ ଶୁଣ ମନ ଦେଇ । ପ୍ରିୟଚର ବୋଲି ତୋତେ କହୁଛୁ ବୁଝାଇ ॥ ଅନଙ୍ଗ ମଞ୍ଜରୀ ଶ୍ରୀମଧୁମଣ୍ଡ ମଞ୍ଜରୀ । ବିଳାସ ମଞ୍ଜରୀ ପୁଣି ଶ୍ୟାମଳା ମଞ୍ଜରୀ ॥ ପାଳିକା ମଞ୍ଜରୀ ଅଟେ ସୁନ୍ଦରୀ ମଞ୍ଜରୀ । ତାରକା ମଞ୍ଜରୀ ମିଶି କସ୍ତୁରୀ ମଞ୍ଜରୀ । ୧୩୦ । ଯେ ଯାହା ସେବାରେ ନିତ୍ୟେ ରସେ ମଜ୍ଜିଥାନ୍ତି । ଆବର ଅଷ୍ଟ ସଖିଙ୍କୁ କରିବା ପ୍ରଖ୍ୟାତ ॥ ଶ୍ରୀରୂପ ଗୋସ୍ୱାମୀ ପାଦ ସେବାରେ ରହନ୍ତି । ସଖି ଅଙ୍ଗ ଧରି କୃଷ୍ଣ ସେବାରେ ରମନ୍ତି ॥ ଶ୍ରୀ ଲୋକନାଥ ଗୋସ୍ୱାମୀ ଶ୍ରୀଅଙ୍ଗ ସେବାରେ । ଅଙ୍ଗ ମର୍ଦ୍ଦନ କରନ୍ତି ସଖି ସଙ୍ଗତରେ ॥ ଶ୍ରୀ ରଘୁନାଥ ଗୋସ୍ୱାମୀ ବ୍ୟଞ୍ଜନ ସେବାରେ । ସଖି ଭାବେ ପାକ ଯୋଗାଉଛନ୍ତି ସୁଚତୁରେ ॥ ଶ୍ରୀ ରଘୁନାଥ ଭଟ୍ଟ ଗୋସ୍ୱାମୀ ସୁମନରେ । ଛନ୍ଦ ବିଛନ୍ଦ କରନ୍ତି ସଖିଙ୍କ ମେଳରେ । ୧୩୫ । ଶ୍ରୀ ଗୋପାଳ ଭଟ୍ଟ ଗୋସ୍ୱାମୀ ଯେ ଆନନ୍ଦରେ । ଆମୋଦରେ ମୋଦ ହୋଇ ବାମା ସ୍ୱରୂପରେ ॥ ଶ୍ରୀ ଜୀବ ଗୋସ୍ୱାମୀ ପାଦ ମର୍ଦ୍ଦନ ସେବାରେ । ଭ୍ରମରୀ ଭାବେ ସେବନ୍ତି କୋମଳ ପାଦରେ ॥ ଶ୍ରୀ ସନାତନ ଗୋସ୍ୱାମୀ ମାଳା ଭୂଷଣରେ । ନାନାଳଙ୍କାର ଖଞ୍ଜନ୍ତି ଦାସୀ ସ୍ୱରୂପରେ ॥ କୃଷ୍ଣ ଦାସ କବିରାଜ ପିଷ୍ଟକ ସେବାରେ । କୃଷ୍ଣ ମନୋମତ ଜାଣି ବାଳାଙ୍ଗୀ ଭାବରେ ॥ ଏପରି ଭାବେ ଗୋସ୍ୱାମୀ ସଖି ହୋଇଛନ୍ତି । ଯୁଗେ ଯୁଗେ ଅବତାର ରସେ ଢଳସନ୍ତି । ୧୪୦ । ଚଉଷଠି ସଖିଙ୍କର ବୁଝିଲି କାରଣ । ଚଉଷଠି ସଖି ମଧ୍ୟେ ଏକକୃଷ୍ଣ ଜାଣ ॥ ନିତ୍ୟରେ ନିତ୍ୟ ବିହାର କରନ୍ତି ଶ୍ରୀବର । ଚବଷଠିରୁ ଷରୁଛି ଚୌଷଠି ସହସ୍ର ॥ ଅଷ୍ଟ ପ୍ରହରେ କୃଷ୍ଣଙ୍କୁ ଅଷ୍ଟ ବାଳଲୀଳା । ଶ୍ରୀକୃଷ୍ଣଙ୍କ ଶ୍ରୀ ଅଙ୍ଗରେ କରିଥାନ୍ତି ଖେଳା ॥ ଚଉଷଠି ସଖିଭାବ ଶୁଣି ହେଲି ତୋଷ । ପ୍ରିୟଚର ବୋଲି ମୋର ହୋଇଲା ପ୍ରକାଶ ॥ ନବମ ଅଧ୍ୟା ରହସ୍ୟ ଶୁଣି ହେଲି ତୋଷ । ଅନ୍ୟ ସମୟେ କହିବା ଦଶ ଅଧ୍ୟା ରସ । ୧୪୫ ।

### ମନ ଉବାଚ

ଜୟ ଜୟ ଜଗବନ୍ଧୁ ଜୟ କମ୍ବୁପାଣି । ବନ୍ଧର ହୃଦ ଗହ୍ୱରେ ବେଳକାଳ ଜାଣି ॥ ନୋହିଲେ ସମ୍ଭଲେ ତୋର ବୁଡ଼ିଯିବ ନାବ । ମୋତେ ତୁ ପାର କରଅ ଭକତବାନ୍ଧବ ॥ ବୁଣ୍ଡୁ ବା କୂଳରେ ଲଗୁ ନାହିଁ ମୋ ଶୋଚନା । ଭରସା ହୋଇ ସେବୁଛି ତୋ ଚରଣେ ସିନା ॥ ପାପ ପୁଣ୍ୟ କାରଣରେ ନାହିଁ ମୋର ଭୟ । କାଳଆସୁନା ମୋହର ଯେବେଠି ଅଶ୍ରୟ ॥ ନିଜ ଅପମାନ ଯୋଗୁ ଜାତ ବୁଡ଼ିଲଣି । କାଳିଆ ପୀରତି ଏକା ସବୁ ନେଲା ଟାଣି ।୧୫୦। ସାରସୁଧା ଗୀତା ତେତା ଆଣି ଦେଉଥିବ । ଭ୍ରାନ୍ତି ଛୁଟାଇ କହନ୍ତୁ ଚଇତନ୍ୟ ଦେବ ॥ ଏକଶ ବାଉନ ପଦେ ପଦ୍ୟ ହେଲା ଶେଷ । ବାଉଳା ଶ୍ୟାମର ଦୋଷ ନ ଘେନ ବଦୂଷ ॥

ଇତି ଶ୍ରୀ ବ୍ରହ୍ମବଦ୍ୟାୟାଂ ପରମହଂସଂ ସଂହିତାୟାଂ ନବଧା ଭକ୍ତି ସାଲୋକ୍ୟ ସାଯୁଜ୍ୟ ସମୀପ୍ୟ ସାରୂପ୍ୟ ଚୌଷଠି ସଖି ସେବା କର୍ଣ୍ଣନେ ମନ ଚୈତନ୍ୟ ସମ୍ବାଦେ ସାରସୁଧା ଗୀତା ନାମ ନବମ ଅଧ୍ୟାୟଃ ।

●

## ଦଶମ ଅଧ୍ୟାୟ

ଜୟ ହେ ରମାରମଣ ଶ୍ୟାମଳ ବରନ । ସରସ ଚିତ୍ତରେ କୁଞ୍ଜେ କର ଆନୟନ ॥ ତବ ଆଦର୍ଶନେ ମୂର୍ଚ୍ଛି ନ ଧରେ ଜୀବନ । କୃଷ୍ଣ ପଦ୍ମ ପାଦେ ରସୁ ଚିତ୍ତ ଅନୁକ୍ଷଣ ॥ କି ଦୋଷ ଜୀବର ଦେଖି ହେଉଛ ନୀରବ । କର୍ଦ୍ଦ୍ୟା ଥିଲେଟି କହ ହେ ଗ୍ରମ ଗ୍ରଦବ ॥ ଅଷ୍ଟ ପ୍ରହରେ କୃଷ୍ଣଙ୍କ ଅଷ୍ଟ କାଳ ଲୀଳା । ଦୟାଥିଲେ ତୋର ଦାସେ କହ ନନ୍ଦବଳା ॥

### ଚୈତନ୍ୟ ଉବାଚ

ଅଷ୍ଟ କାଳ ରହସ୍ୟ ଯା ପୁଚ୍ଛାକଲୁ ତୁହି । ତାହାର ବୃତ୍ତାନ୍ତ ଶୁଣ କହିବା ବୁଝାଇ ।୫। ସଂକ୍ଷିପ୍ତରେ ଶୁଣ ମନ ଅଷ୍ଟ କାଳ ରସ । କାୟୁକୁ ବେଉଷା କଲେ ପାଇବୁ ସୁରସ ॥

ଶ୍ଳୋକଃ

ନିଶାନ୍ତଃ ପ୍ରାତଃ ପୂର୍ବାହ୍ନୋ ମଧ୍ୟାହ୍ନସ୍ତ୍ଥା ପରାହ୍ନକ ।
ସାୟଂ ପ୍ରଦୋଷନକ୍ତଂ ଚ ତ୍ୟଷ୍ଟୌକାଳ ପ୍ରକୀର୍ତ୍ତିତାଃ ।
ତତ୍ରାପ୍ୟେହ୍ନି ପ୍ରାତଋଦ୍ୟା ଏଷାଂଶେଷା ନିଶାସ୍ତୃତା ।
ଋତୁଦଣ୍ଡା ଆମୀକାନ୍ତ ଭୂଷଷ୍ଟୌ ମାଷ୍ଟଦଣ୍ଡକୌ ।
କାଳେ କାଳେ ପ୍ରହେଳିକା ସ୍ମରଣୀୟା ଚ ମାନସେ ॥

ନିଶାନ୍ତଃ ପ୍ରାତଃ ପୂର୍ବାହ୍ନ ମଧ୍ୟାହ୍ନ ଏ ବୃତ । ପରାହ୍ନ ସାୟଂ ପ୍ରଦୋଷ ନକ୍ତ ମିଶି କର ! ଏ ଅଟେ ଅଷ୍ଟପ୍ରହର ଶୁଣ ଭୂଲମନ । ଏ ଅଷ୍ଟ କାଳର କଥା କରିବା ପ୍ରଚ୍ଛିନ୍ନ ॥ ସୂର୍ଯ୍ୟୋଦୟ ସମୟେଣ ଛଅ ଦଣ୍ଡ ହୁଏ । ପ୍ରାତଃକାଳ ଦଣ୍ଡଭୋଗ ତାକୁ କୁହାଯାଏ ॥ ତାର ପରେ ଛଅ ଦଣ୍ଡ ଜାଣିବୁ ପୂର୍ବାହ୍ନ ॥ ତାରପରେ ବାର ଦଣ୍ଡ ବୋଲିଏ ମଧ୍ୟାହ୍ନ । ୧୦ । ଛଅ ଦଣ୍ଡ ଅପରାହ୍ନ ପୁଣି ଭୋଗ ହୁଏ । ସୂର୍ଯ୍ୟ ଅସ୍ତକୁ ତିରିଶ ଦଣ୍ଡ ଭୋଗ ଯାଏ ॥ ସାୟଂ କାଳ ଛଅ ଦଣ୍ଡ ପୁଣି ଭୋଗ ହୁଏ । ପ୍ରଦୋଷ ଛ' ଦଣ୍ଡଆସି ରାତ ପୂରି ହୁଏ ॥ ନକ୍ତ କାଳ ବାରଦଣ୍ଡ ଭୋଗାଭୋଗ ହୋଇ । ତାର ପରେ ଛଅଦଣ୍ଡ ଅନ୍ୟ କାଳ କହି ॥ ଏପରି ରାତ ତିରିଶ ଦଣ୍ଡ ଭୋଗ ହୋଇ । ଦିବା ରାତ୍ର ମିଶିକରି ଷାଠିଏ ଦଣ୍ଡ କହି ॥ ଅଷ୍ଟ କାଳ ବୃତ୍ତାନ୍ତକୁ ଯୋଗୀ ଜାଗିକରି । ଅଷ୍ଟ କାଳ ସେବା ସମର୍ପନ୍ତ ତପଃଶ୍ରୀ । ୧୫ ।

ଶ୍ଳୋକଃ

ଆସନଂ ସ୍ୱାଗତଂ ପାଦ୍ୟଂ ମର୍ଘମାଚମନୀୟକଂ ।
ମଧୁପର୍କା ଚ ମନଃ ସ୍ନାନ ବସନା ଭରଣାନି ଚ ॥
ସୁଗନ୍ଧଃ ସୁମନେ ଧୂପୋ ଦୀପୋ ନୈବେଦ୍ୟ ବନ୍ଦନେ ।
ଇତ ପଜେଦର୍ଚ୍ଚ ନାୟୀ ମୂପଚ୍ଚରସ୍ତୁ ଷୋଡ଼ଶୋଃ ॥

ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ଆଚମନ । ମଧୁପର୍କ ସ୍ନାନ ବସ୍ତ୍ର ଅଳଙ୍କାରମାନ ॥ ଚନ୍ଦନ ଆବର ଗନ୍ଧ ପୁଷ୍ପ ଧୂପ ଦୀପ । ନୈବେଦ୍ୟ

ସୂତ୍ର ଷୋଡଶୋ ପୂଜାରେ ସଂକଳ୍ପ ॥ ଷୋଡଶୋପଚ୍ଚରେ ପୂଜା ନଇବେଦ୍ୟ ଦେବ । ଆତ୍ମାରେ ଆତ୍ମା ମିଶାଇ ଅର୍ପଣ କରିବ ॥

ଶ୍ଳୋକ

ଶ୍ରଦ୍ଧା ପୁଷ୍ପ ମନଂ ହାରଃ ସୁମନ ଧୂପ ଦୀପକଂ ।
ଅନାହତ ଘଣ୍ଟା ନାଦେନ ସା଼ଽପୂଜା ପରମେଶ୍ୱରଃ ॥

ସୁଶ୍ରଦ୍ଧା ପୁଷ୍ପ ଅଟଇ ମନ ଅଟେ ହାର । ସୁମନ ଯେ ଧୂପ ଦୀପ ସୁମନେଣ ଭର ॥ ଅନାହତେ ଘଣ୍ଟା ନାଦେ ସଞ୍ଜମ ଲଗାଇ । ଯକ୍ଷ ରକ୍ଷସ କନ୍ନର ନ ଉଣ୍ଡବେ କେହ୍ନି । ୨୦ । ଏପରି ନିଷ୍କାମେ ପୂଜାକର ଶ୍ରୀହରଙ୍କୁ । ଅଷ୍ଟକାଳେ ଅଷ୍ଟାଙ୍ଗରେ ଚନ୍ତ ଶ୍ରୀକୃଷ୍ଣଙ୍କୁ ॥ ଅଷ୍ଟକାଳର ସାଧନ ଆତ୍ମା ମଧ୍ୟେ ଧର । କର୍ମ କାଣ୍ଡରେ ଭୁଲିଲେ ଦୂର ବଂଶୀଧର ॥ ଅଣ ସାଧନା ରହସ୍ୟ ଶୁଣରେ କୁମର । ଅନ୍ୟ ଆଗେ କହିଲେ ତୁ ହେବୁ ନାରଖାର ॥

ଶ୍ଳୋକଃ

ମହାଶୂନ୍ୟଂ ଅଣାକାରଂ ଅବ୍ୟକ୍ତମପିର୍ଣ୍ଣସ୍ୟୋ ।
ପୂର୍ଣ୍ଣଚନ୍ଦ୍ର ସମାଯୁକ୍ତଂ ବିନ୍ଦୁନାଂ ଶଶିନଃ କ୍ଷୟୂ ॥
ଅକ୍ଷର ଉତ୍ପତ୍ତିନାଂ ଚ ଇଦଂ ବ୍ରହ୍ମସୋଽପିସ୍ଥିତଂ ।
ଏକେକଂ ବ୍ରହ୍ମବୀଜଂ ଚ ହରେ ହବିର ସଂସ୍ଥିତଂ ॥

ମହାଶୂନ୍ୟ ଅଣାକାର ଅବ୍ୟକ୍ତ ବର୍ଣ୍ଣରେ । ଆଚମ୍ଭିତରୁ ଜନ୍ମିଲ ବୀଣା ସ୍ୱରୂପରେ ॥ ଅକଳଟରୁ କଳିତ ଶବଦ ଜନ୍ମିଲ । ରେହମାହା ବୋଲି ସତ୍ତା ଭରଣ ହୋଇଲ । ୨୫ । ବ୍ରହ୍ମମାନ୍ତ ସେହି ଅଟେ ହେତୁ କରି ଧର । ସଦଗୁରୁ ପାଣ୍ଠି ଧନ କର କାରବାର ॥

ଶ୍ଳୋକଃ

ଦେହସ୍ଥ ଉତ୍ପତ୍ତିଶ୍ଚୈବ ଅଣାକ୍ଷରେ ପ୍ରକାଶଯ୍ୟେତ ।
ଅଣାକ୍ଷରଂ ତ ବର୍ଣ୍ଣଂ ଚ ଜ୍ୟୋତି ରୂପେଣ ବ୍ୟାପକଂ ॥
ଏବଂ ଜ୍ୟୋତି ଯଥାମାୟା ଆକାର ରୂପ ସଂସ୍ଥିତଂ ।
ଦ୍ୱିପାଦ ଯୁଗ ସଂଯୁକ୍ତଂ ପ୍ରେମାଗାରସ୍ୟଧାରଯ୍ୟେତ୍ ॥

ଅଣ ଅଣରୁ କ୍ଷରଣ ଦେହ ଜାତ ହେଲା । ଦେହ ମଧ୍ୟେ ଅବିନାଶୀ ରୂପରେ ରହିଲା । ଅଜ୍ୟୋତିରୁ ଜ୍ୟୋତି ହୋଇ ବ୍ୟାପିଲା ଜଗତ । ପ୍ରେମ ମୋହିତ ହୁଅନ୍ତେ ରୂପ କଲେ ଜାତ ॥ ତିନପଣ ଆଠପଣ ପ୍ରେମାଗାର ହୋଇ । ଶୂନ୍ୟପଣ ତା ତଳରେ ବଇଠ ହେଲଇଁ । ଯାରୁଣେ ବନ୍ଦୁମାନ୍ଦା ତା ଉର୍ଦ୍ଧେ ଶୂନ୍ୟପଣ । ବିନ୍ଦୁ ପ୍ରେମଗାର ହୋଇ ହେଲେ ସୁଗଠନ । ୩୦ ।

ଶ୍ଳୋକଃ

ଏବଂ ବ୍ରହ୍ମ ପ୍ରପୂର୍ଣ୍ଣ ପ୍ରପୂର୍ଣ୍ଣଂ ସଦା ଅଚ୍ୟୁତ ଆଶ୍ରୟଃ ।
ଏବଂ ଭବ ମହାସୂକ୍ଷ୍ମ ଜନ୍ମ ଜନ୍ମାନ୍ତର ଭବେତ୍ ॥
ଓଁ ମନ୍ତ୍ର ଧାରଣଂ ଚୈବ ଅଣାହରଂ ପ୍ରକାଶୟେତ୍ ।
ଅରେ ହରେହ ଆହଷ୍ଟ ବ୍ରହ୍ମ ଏକାକ୍ଷରଃ ସ୍ୱୟଂ ॥
ତତଶ୍ଚ ବିନ୍ଦୁ ସଂଯୁକ୍ତଂ କକାର ଭବ ବେଷ୍ଟିତଂ ।
ଆଦ୍ୟମାତା କକାରଂ ଚ ମୂଳଂ ଚ ଅର୍ଦ୍ଧମାତ୍ରୟା ॥

ଏପରି ବ୍ରହ୍ମକୁ ଭଜ ଧରି ଏକାକ୍ଷର । ଓଁ ମନ୍ତ୍ର ଅନନ୍ତ କକାରକୁ ଲକ୍ଷ୍ୟକର । କହ୍ନା ଅବତାର ହୋଇ ଦ୍ୱାପର ଯୁଗରେ । ଚୌଷଠି ସହସ୍ର ଗୋପୀ ବହରିଲେ ବାରେ ॥

ଶ୍ଳୋକଃ

ଜୟ ତ୍ରିପୁର ସୁନ୍ଦରୀ ଭକ୍ତିଦାୟିନୀ ସର୍ବଦା ।
ନମସ୍ତେ ରମା ବୀଜଂ ଶୋଭିତଂ ଚ ପରାତ୍ମିକା ॥
ଯୋଗ ସ୍ୱରୂପମାହତ୍ୱଂ ବୀଜଧାନଂ ସଦାତ୍ମିକା ।
ବାଞ୍ଛାସିଦ୍ଧଂ ଚ ମେ ଦେହି ମାତଃ ତ୍ରିପୁର ସୁନ୍ଦରୀଃ ॥

କାମବୀଜେ ଧ୍ୟାନକରି ଚେତା ରଖ ଭୂରୁ । ଅଣସାଧନ ମାର୍ଗକୁ ମନକର ସରୁ । ଏକ ଅକ୍ଷର ମନ୍ତ୍ରଟି ଯେଠାରୁ କ୍ଷରଣ । ଗୁରୁ ସେବାକରି ବୁଝ ସୃଷ୍ଟିର କାରଣ ॥ ଏକ ଅକ୍ଷର ଉତ୍ପନ୍ନ ହୋଇଛି ଏଠାରେ । ମାନସିକେ ଧ୍ୟାନକର ଗୁରୁ ସେବବାରେ ॥

ଜହ୍ନା ଓଷ୍ଠ ନ ଚଳବ ଧର ସେହିଠାର । ଭାଗ୍ୟଥିଲେ ଏ ଭଜନ ପାଇବୁ ତୁମର । ୩୬ । ଅର୍କ ଯେସନେ ତମିର ନାଶ କରୁଛନ୍ତି । କୃତାନ୍ତକ ପଳାଇବ ବଳାଇଲେ ପ୍ରୀତି ॥

ଶ୍ଳୋକଃ

ହକାର ସପ୍ତଧାକୃଷ୍ଣ ବେଷ୍ଟିକଂ ସାର ମାତ୍ରକଂ ।
ନକାରଂ ଚ ବୀଜ ଜପନ୍ତ ଗୁଣିକୋସଦାଃ ॥

ରେଫକୁ ଘେନଣ ସପ୍ତମାତ୍ରା ହେଲା ପୁଣ । ଆକାର ହରଟି ଉକାର ହରଟି ଜାଣ ॥ ଇ କାର ହରେ ଇ କାର ହର ହେଲା ଶୁଣ । ଅଂକାର ହର ହୋଇଣ ପଞ୍ଚଧାତୁ ପୂର୍ଣ ॥ ହରୌ ହରଃ ଚନ୍ଦ୍ର ସୂର୍ଯ୍ୟ କରନ୍ତ ଭ୍ରମଣ । ସପ୍ତମାତ୍ରା ବ୍ରହ୍ମବୀଜ ବେଷ୍ଟିତ ହୋଇଣ । ୪୦ । ଷୋଳନାମ ଗୋଟି ହୋଇଅଛି ଭବ ଖମ୍ବ । ବୋମୁହାଁ ସର୍ପ ହୋଇଛି ଶିକୁଳୀର ଛନ୍ଦ ॥

ଶ୍ଳୋକଃ

ଅନାମ ବ୍ରହ୍ମ ତାତ୍ତ୍ୱଂ ଚ ନାମ ବ୍ରହ୍ମ ପଦାଶ୍ରିତଂ ।
ଭ୍ରୂଲତାସ୍ଥାଂ ହୟୋର୍ମଧ୍ୟେ କାମବୀଜ ସ୍ୱରୂପକଂ ॥
ତାରେ ନାସା ଚକ୍ଷୁ ତନ୍ତ୍ରଃ ଘଟିକା ତୁଣ୍ଡହସ୍ତଂ ଚ ।
ଅଥର୍ବ ଅର୍ଦ୍ଧମାତ୍ରାଂ ଚ ବିନ୍ଦୁ ଚ କାମବୀଜକଂ ॥
ତଦ୍ଊର୍ଦ୍ଧ୍ୱେ ଅଣାକ୍ଷରଂ ଅଚ୍ଛିଦ୍ର ଭବ ବେଷ୍ଟିତଂ ॥
ପ୍ରଣସ୍ଥଂ ଯୁଗରୂପଂ ଚ ଅଷ୍ଟମ୍ବିତଂ ସ୍ୱରୂପସ୍ଥଂ ।
ବେକନ କୂଟ ମଧ୍ୟଭାଗେ ଅମ୍ବିକା ଲମ୍ବିକା ସଦା ॥
କାସ୍ଥା ସୁଭ୍ରାନ୍ତ ମଧ୍ୟେ ଚ ଜ୍ଞାନଂ ଚ ଶବ୍ଦବ୍ରହ୍ମକଂ ॥
ମଦାଶୂନ୍ୟ ଶବ୍ଦଜାତଂ ତସ୍ୟ ଶବ୍ଦଂ ସ୍ୟାଯାଧ୍ୱମାଃ ।
ତଛନ ଅନାଦ ରୂପଂ ଚ ଗୁପ୍ତମେସ୍ଥଂ ଚ ॥
ଅକଳତ ବ୍ରହ୍ମ ରୂପେଣ ଆଚମ୍ବିତଂ ଜ୍ୟୋତିଃ ରୂପକଂ
ଶିଶୁବେଦ ଭବେଦ୍ ବିନ୍ଦୁ ଅଥର୍ବ ଅର୍ଦ୍ଧ ମାତ୍ରୟୋଃ ॥

ଶାମବେଦେ କାମବୀଜଂ ଋମା ଚ ଯଜୁଃ ବେଦକଂ ।
ଋକ୍‌ବେଦ ହ୍ରୁଁ ବୀଜଂ ଚ ପଞ୍ଚବେଦାଦ୍ଧ ବୀଜକଂ ॥
ୟସ୍ୟ ଭବନ୍ତି ହୃଦୟଂ ମମବାସଂ ସାରଂ ସଦା ।
ଅବିଦ୍ୟା ମେଘମାକାଶଂ କ୍ଷରିତଂ ବାନ୍ଧୁ ରୂପକଂ ॥
କକାରଂ ଚ କାମଜନ୍ମଂ ରସପନ୍ନଂ ଭବେଦ୍ରୂପର୍ବ ।
ପରଜନ୍ମଂ ଚ ଶେଷଂ ଚ ଶେଷଂ ଚ ବଳଭଦ୍ରସ୍ୟୋଃ ॥
ବଳଭଦ୍ର ବିର୍ବଟଂ ଚ ବିର୍ବଟ ଜନ୍ମ ଚନ୍ଦ୍ରସ୍ଥଳୀ ।
ଶୃଣୁ ପାର୍ଥ ମହାବାକ୍ୟ ଧାରଯ୍ୟେ ଚ ଜନାର୍ଦ୍ଦନଃ ॥
ନମେଃ ବ୍ରହ୍ମ ଶୂନ୍ୟବ୍ରହ୍ମ ନମୋଃ ନମୋଃସ୍ତୁତେ ।
ହୃଦୟଂ ଧ୍ୟାୟତଂ ନିତ୍ୟ ଶରଣଂ ଯାନ ଅଚ୍ୟୁତ ॥

ଇଅଁଳା ପିଅଁଳା ସର୍ପାକୃତିରେ ମଧ୍ୟରେ । ଶିଶୁମୁନା ଦେଖକୁଅଛୁ ଓଁ ହଂସ ହଂସ ସ୍ୱରରେ ॥ ଗୁରୁ ନ ସେବିଲେ ସଦଜ୍ଞାନ ନୋହେ କରୁ । ବିନା ଗୁରୁରେ ଉଦ୍ଧାର ଖୋଜ କେ ପାଇଛୁ ॥ ତେଣୁକରି ଗୁରୁପାଦେ ପୁଛ ବାରବାର । ତାହା ତୋତେ ଶ୍ରୀମୁଖରେ କରିବେ ଉଦ୍ଧାର ॥ ଗୁରୁ କୃପା ହୋଇଲେଟି ଗିରି ଲଙ୍ଘିବାରୁ । ପଦ୍ମପାଦ ଧରି ଯାଇ ଶ୍ରୀଗୁରୁ ଭଣ୍ଡାରୁ ॥

ମନ ଉବାଚ

ନମସ୍ତେ ଶ୍ରୀଗୁରୁଦେବ ନିର୍ଗୁଣ ଆସନ । ବ୍ରହ୍ମ ନିରୂପଣ କହି ତୋଷକର ମନ ॥ ସକଳ ନିର୍ଣ୍ଣୟ କରି ବୁଝାଇ କହିଲ । ଆବର ଯେତେକ କଥା ଗୁପତେ ରଖିଲ ॥ ଅବଧୂତ ପାଦ ସଦା ଆଶ୍ରୟରେ ଥାଉ । କହ ଏକ ଭକ୍ତ କଥା ସଂଶୟ ନ ଥାଉ ।

ଚୈତନ୍ୟ ଉବାଚ

ଶ୍ରୀଗୁରୁଦେବ ବୋଲନ୍ତି ଶୁଣରେ କୁମର । ଅଳଆ କଥାକୁ ତୋର କରିବା ବିସ୍ତାର ॥ କ୍ଷମା ଦୟା ଶାନ୍ତି ସତ୍ୟ ହୃଦରେ ବହିବୁ । ଦୁର୍ଜ୍ଜନ ବଚନ ଶୁଣି କୋପିତ ନୋହିବୁ । ୫୦ । ବସୁଧା

ପରି ସମ୍ଭାଳ ଯେ ସବୁ ପାରିବୁ । ମୋହ ମାୟାରୁ ଉଦ୍ଧର ସେ ଧନ
ସାରୁଛୁ ॥ ଯମୁନା ତୀରରେ କେଳୀ କଦମ୍ବର ବୃକ୍ଷେ । ଉଭା ହୋଇ
କୃଷ୍ଣଚନ୍ଦ୍ର ଆଖିରଙ୍କ ଲକ୍ଷେ ॥ ଧୀର ସମୀର କରିବୁ ନ ରଖ
କପଟ । ଚ୍ଛନ୍ଦ କୁଟିଳ ହଂସାରେ ଜ୍ଞାନ ହୁଏ ନଷ୍ଟ ॥ ଅଗ୍ନିର ପାଷାକୁ
ଧରି ପାରିବୁ ତୁ ଯେବେ । ଅବଧୂତ ପୁଣ ହୋଇ ପାରିବୁଟି
ତେବେ ॥ ଅପର ପରସ୍ପେ ସମଦରଶୀ ହୋଇବୁ । ଆକାଶ ପରି
ଅଚଳ ମନକୁ କରିବୁ । ୧୫ । ଉଚ୍ଚ ନୀଚ ନ ବାରି ।ରିଲେ
ହେବୁ ନଷ୍ଟ । ଆତ୍ମାର ବର୍ଣ୍ଣରେ ଭେଦ ନୁହେଁ ହୃଷ୍ଟ ॥ କହିବା
ଶୁଣିବା ଆଉ ଦେଖିବା କଥାଟି । ଶୁଙ୍ଘିବା ବା ଏ ଗୁରିକଥା ପାଶୋରି
ଦେବୁଟି ॥ ଏ ସବୁ ପ୍ରକୃତି ଖେଳ କର ତୁ ବିଗ୍ଭର । ନ ବୁଝି ଅର୍ଥ
ଅନର୍ଥ କରନ୍ତି ନାକର ॥ ନ ଧରି ଛଡ଼ଛେ ତର ଜନଙ୍କର କଥା ।
ଆପେ ଅପରାଧୀ ହେବୁ କର ତୁ ବ୍ୟବସ୍ଥା ॥ କହିବା ଶୁଣିବା କଥା
ମିଥ୍ୟା ହୁଏ ଜାଣ । ଆପକୁଆପେ ଖୋଜିଲେ ପାଇପାରୁ ଜ୍ଞାନ ।୭୦।
ହଂସ ସୋହଂ ରାମ ମନ୍ତ୍ର ଜପିଲେ କି ହେବ । ଅନ୍ନ ଅନ୍ନ ବୋଇଲେ
କି କ୍ଷୁଧା ନାଶଯିବ ॥ ଆହାର କଲେଟି ସିନା ଆତ୍ମା ଶାନ୍ତ ହେବ ।
ନାମକୁ ଭଜିଲେ ସିନା ମୁକତି ପାଇବ ॥ ଭଜୁଥିଲେ କିସ ଲଭ
ସ୍ଥିର ନ ହୋଇଲେ । ସ୍ଥିର ହୋଇଲେ କି ହେବ ତତ୍ତ୍ୱ ନ
ଖୋଜିଲେ । ତତ୍ତ୍ୱ ଖୋଜିଲେ କି ହେବ ଭେଦ ନ ପାରିଲେ ।
ଭେଦିଲେଟି କିସ ହେବ ଚେତ ନ ପାରିଲେ ॥ ଚେତନ୍ୟା ବଳିଲ କି
ହୋଇବ ଧରି ନ ପାରିଲେ । ଧରି ପାରିଲେ କି ହେବ ଚିହ୍ନି ନ
ପାରିଲେ । ୭୫ । ଚିହ୍ନି ଧରିଲେ କି ହେବ ଦାର୍ଢ୍ୟ ନ ଧଇଲେ ।
ଦାର୍ଢ୍ୟ ଧଇଲେ କି ହେବ ମଜ୍ଜି ନ ପାରିଲେ ॥ ମଜ୍ଜି ନ ପାରିଲେ କି
ହେବ ବ୍ରହ୍ମେ ନ ଖେଳିଲେ । ବ୍ରହ୍ମରେ ଖେଳିଲେ ନିତ୍ୟ ଲୀଳା
ଦେଖେ ଭଲେ ॥ ରାଧା କୃଷ୍ଣ ନିତ୍ୟ ଲୀଳା କରିପାରେ ଅନ୍ତ ।
ଅଣରୂପ ବ୍ରହ୍ମମୂର୍ତ୍ତି ଖେଳୁଛି ଜଗତ ॥ ଅଜପା ଗାୟତ୍ରୀଠାରେ
ରଖିଥିଲେ ଲୟ । କୋଟିଜନ୍ମ ପାପ ଯିବ ନାହିଁ ଯମ ଭୟ ॥

ଗାୟତ୍ରୀ ଶ୍ଳୋକଃ

ଅଷ୍ଟାକ୍ଷରଂ ତକାରାଦ୍ୟା ପାଦମେକେ ଚ ଗାୟତ୍ରୀ ।
ଭକାରାଦ୍ୟା କ୍ଷରଂଅଷ୍ଟ ଦ୍ୱିତୀୟଂ ଚ ପ୍ରବର୍ତ୍ତତେ ॥
ଅଷ୍ଟାକ୍ଷରଂ ଧିକାରାଦ୍ୟା ଭବେତ୍ତୁ ପାଦ ତୃତୀୟକଂ ।
ଅବନାଷ୍ଟାକ୍ଷରଂ ଚନ୍ଦେ ଗାୟତ୍ରୀଂ ଚ ଚତୁଷ୍ଟୟା ॥

ସଦଗୁରୁଠାରେ ସୂକ୍ଷ୍ମ ଶିକ୍ଷା ଥିଲେ କର । ଅପନରେ ମନ ଥୋଇ ଚିନ୍ତୁଥିବୁ ହର । ୭ ° । ମୃଣାଳ ସୂତ୍ରରେ ବାୟୁ ଟେକିବୁ ଆକାଶ । ହଂସ ଭଜନେ ଭଜିବୁ ବନ୍ଧ ଦଶ ଦଶ ॥ ଆସନ ଶୁଦ୍ଧି କରିବୁ ଆସନ ମନ୍ତ୍ରରେ ॥ ଷଡ଼ଚକ୍ରେ ଅଙ୍ଗନ୍ୟାସ କରିବୁ ପ୍ରେମରେ॥ ଉଠି ବ୍ରହ୍ମ ମୁହୂର୍ତ୍ତେ ବସିବୁ ପଦ୍ମାସନ । ଆସନ ନିଶ୍ଚଳ କରି ହୋଇବୁ ମଉନ ॥ ଅଜପା ସୂତ୍ରେ ଜପିବୁ ନ ହଲିବ ଓଷ୍ଠ । ଚନ୍ଦ୍ର ସୂର୍ଯ୍ୟ ବାନ୍ଧି ହଂସେ କର ସାଧୁ ତୋଷ୍ଟ ॥ ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ସର୍ବ ହୁଏ ସିଦ୍ଧି। ଏହି ଯୋଗ ଧରି କାଳ ପକାଇବୁ ଛେଦ ।୭୫। ସିଦ୍ଧି କଳ୍ପର ବିଷୟ ଶୁଣ ମନରାଜା । ସିଦ୍ଧି କର ରହିଛନ୍ତି ଯତି ପାଇ ମଜା ॥ ଶିବାଙ୍କୁ କହିଅଛନ୍ତି ନିଜେ ଶୂଳପାଣି । ସୁମନେ ଶୁଣ କହିବୁ ସିଦ୍ଧ କଳ୍ପବାଣୀ॥ ତ୍ରିଫଳା ତ୍ରିବୀଜ ହରିତକୀ ଭୁଇଁଲିମ । କଳ୍ପଓର ମିଶାଇବ ସମଭାଗେ ପୁଣ ॥ ଖରରେ ଶୁଖାଇ ତାହା ଖଲରେ ବୁରିବ । ସୁକ୍ଷ୍ମ ବସନେ ଛାଣି ଡାଲଭରେ ରଖିବ ॥ ପ୍ରଭାତ କାଳରେ ତିନ ଚିମୁଟା ଖାଇଲେ । କ୍ଷୁଧା ତୃଷା ନ ବାଧଇ ନିଶ୍ଚୟରେ ଭକ୍ଷିଲେ ॥ ଆଉ ଏକ ସିଦ୍ଧ କଳ୍ପ କର ତୁ ଶ୍ରବଣ । ବୋଲପତର ନିର୍ଗୁଣ୍ଡି ଗଞ୍ଜାଇକ ଘେନ ॥ ବାସଙ୍ଗ ପତ୍ରରେ ହରିତକୀକ ମିଶାଇ । ସମଭାଗ କରିଣ ତା ଖରରେ ଶୁଖାଇ ॥ ଖଲରେ ଚୂରି ତା କ୍ଷୀନ କନାରେ ଛାଣିବ । ସୂର୍ଯ୍ୟୋଦୟ ବେଳେ ତିନ ମୁମୁଠା ଖାଇବ ॥ କ୍ଷୁଧା ତୃଷା ନ ବାଧିବ ତାହାର ହୃଦରେ । ଚମ୍ପାଫୁଲ ପ୍ରାୟେ କାନ୍ତି ଦିଶିବ ଶରୀରେ ॥ ଏହାଙ୍କୁ

ଖାଇଲେ ରୋଗ ଥିଲେ ପଳାଇବ । ଏହା ନ ଜାଣନ୍ତି କେହି ସିଦ୍ଧ କଳ୍ପଭାବ । ୮୫ । ଶଙ୍କର କହିଣଥିଲେ ପାର୍ବତୀଙ୍କ ଆଗେ । ଉତ୍ତମ ଶିଷ୍ୟରେ ଏହା କହିବୁ ସବେଗେ ॥ ଆବର ସାତୋଟି କୋଳି ବରପତ୍ର ଆଣି । ଗୁଞ୍ଜଶ୍ୱେତ କନ୍ଦମୂଳ ମିଶାଇବ ପୁଣି ॥ ଜଳ ଦେଇ ଖଲରେ ଯେ ପେଷିବ ଚକ୍‌କଣ । ଏକୋଇଶ ଦିନ ପ୍ରାତେଃ କରିଣ ଭକ୍ଷଣ ॥ ଏହି କଳ୍ପ ଅଟେ ସିଦ୍ଧ ଦେହ ହେବାପାଇଁ । ଗୁପତରେ ମୁନିମାନେ ରଖିଧାନ୍ତି ଥୋଇ ॥ ସିଦ୍ଧ କଳ୍ପ କୁଜନମାନଙ୍କୁ ନ କହିବୁ । ପ୍ରକଟ ନ କରି ଭଲ ଗୁପତେ ରଖିବୁ ।୯୦। ଆବର କଥାଏ ମନ ଶୁଣଧୀର ସ୍ଥିର । ବ୍ରହ୍ମଜ୍ଞାନ ରସ ଏହୁ ଅମୃତ ସାଗର ॥ ସାତ ଦିନ ଚନ୍ଦ୍ର ଘରେ ବାୟୁ ରହିଥିଲେ । ଜାଣିବୁ ଆୟୁଷ ନାହିଁ କାଳ ଘଟେଇଲେ॥ ଟେଚାଇ ବାୟୁ ଆଣିବୁ ସୂର୍ଯ୍ୟର ଘରକୁ । ଅଷ୍ଟାଙ୍ଗ ଧ୍ୟାନ ଧାଇଣ ରଖି ଶ୍ରୀଅଙ୍ଗକୁ ॥ ମରଣ ଜାଣିବା ପାଇ ଅଷ୍ଟାଙ୍ଗ ସାଧନ । ଅଷ୍ଟାଙ୍ଗ ସାଧନା ଏହି ଯୋଗୀଙ୍କ ମରମ ॥ ଆବର ଜିହ୍ୱା ଟୋହର ନ ଦିଶିବ ଯେବେ । ଜାଣିବୁ କାଳ ନିକଟ ହୋଇଲକ ତେବେ ।୯୫। ଊର୍ଦ୍ଧ୍ୱକୁ ଚାହିଁଲେ ଯହି ଭୂରୁ ନ ଦିଶିବ । ମରଣ ସମୟ ସେହିକର ଅନୁଭବ॥ କୃତ୍ତିକା ନକ୍ଷତ୍ର ଆକାଶରେ ନ ଦିଶିଲେ । ମରଣ ଶକୁନ ସେହି ଜ୍ଞାନ କର ଭଲେ ॥

ଶ୍ଳୋକଃ

ଦେବ ମାର୍ଗଂ ଧ୍ରୁବଂ ଶୁକ୍ର ସୋମଚ୍ଛାୟାଂମରୁନ୍ଧତୀଂ ।
ଯୋ ନ ପଶ୍ୟେନ୍ନ ଜୀବେତ୍ସ ସଂନରଃ ସମ୍ବତ୍ସରଂ ॥
ଅରଶ୍ମି ବିମ୍ବଂ ସୂର୍ଯ୍ୟସ୍ୟ ବହ୍ନିଂ ଚୈବାଂଶୁଂମାଳିନଂ ।
ଦୃଷ୍ଟ୍ୱୈକା ଦଶମାସାତ୍ତୁ ନରୋନୋର୍ଦ୍ଧ୍ୱଂତୁ ଜୀବତି ॥

ବେଦମାର୍ଗରେ ଏ କାଳ ଜ୍ଞାନ କହିଛଇ । ଧ୍ରୁବ ତାରା ଶୁକ୍ର ତାରା ପୁଣି ଚନ୍ଦ୍ର କହି ॥ ଆପଣା ଛାଇପୁଣି ଅରୁନ୍ଧତୀ ନକ୍ଷତ୍ର ଯାହାକୁ ନ ଦିଶେ ବର୍ଷକରେ ମୃତ୍ୟୁକ୍ଷେତ୍ର ॥ ଯାହାକୁ ସୂର୍ଯ୍ୟମଣ୍ଡଳ ରଶ୍ମି ନ ଦିଶିବ । ଏକ ବରଷେ ତାହାର ଘଟ ଜୀର୍ଣ୍ଣ ହେବ ॥ ଆବର ଅନଳ

ଅଂଶୁମାଳ ପର ଦଶେ । ଏଗାର ମାସରେ ମୃତ୍ୟୁ ଜାଣିବେ ବନ୍ଧୁ ଯୋ । ଏ ଦେହ ଗୁଡ଼ିଲେ ଆଉ କଛୁ ଜ୍ଞାନ ନାହିଁ । ଅଣଦେହ ହେଲେ ବ୍ରହ୍ମ ପାଇବୁ ତୁ କାହିଁ ॥ ଶବଦରେ ଥାଇ ଅନାମକୁ କର ଲୟେ । ତେବେ ସେ ଛୁଟିବ ତୋର ଯୋନି ଜନ୍ମ ଭୟେ ॥ ଆକାରରେ ଥାଇ ଅଣ ଆକାରକୁ ଭଜ । ମୃଥା କୁଣ ପ୍ରାପ୍ତେ ଦେହ କର ତୁ ନିର୍ଭଜ ।୧୦୦। ଜୁଠର ପଥର ପରି କର ତୋର ହିଆ । ତେବେ ଅଣରୂପ ବ୍ରହ୍ମ ତୋତେ ହେବେ ଦୟା ॥ ସହିବା ଲୋକଟି ଜାଣ ବଡ଼ ସାମରଥ । କହିବା ଲୋକଟି ଜାଣ ଦୁର୍ଜ୍ଜନ ପତିତ ॥ ମୂଳ ଶୂନ୍ୟ ପର ହେଉଅଛୁ କ୍ଷରାକ୍ଷର । ଊର୍ଦ୍ଧନାଭି ପ୍ରକାରେ ଲଗିଛୁ ବ୍ରହ୍ମାଣ୍ଡର । ମୂଳ ଶୂନ୍ୟଠାରୁ ସର୍ବେ ହେଉଛନ୍ତି ଜାତ । ତଥିପରେ ମହାନନ୍ଦ୍ୟ ଲୀଳା ଆଲୋକତ । ମୂଳ ଶୂନ୍ୟଠାରୁ ଜନମିଛି ପଞ୍ଚବେଦ । ତହିଁ ଉପରକୁ କାର ନ ଚଳଇ ପାଦ । ୧୦୫ । ମୂଳ ଶୂନ୍ୟଠାରୁ ଦୁଇ ଯୁଗଳ ଲଗିଛୁ । ଶ୍ରୀଂ ବୀଜ ଶ୍ରୀରାଧା କ୍ଲୀଂ ବୀଜ କୃଷ୍ଣ ହୋଇଛୁ ॥ ମନସହତରଙ୍ଗ ଦୁଇ ସଙ୍ଗେ କଲେ ସଙ୍ଗ । ମଦନ ମୋହନ ରୂପ ମିଳାଇବ ଅଙ୍ଗ ॥

## ଶ୍ଳୋକଃ

ଅନୁଭବ ସୂକ୍ଷ୍ମ ସାରଂ ବୈକୁଣ୍ଠ ସ୍ଥାନ ଅସ୍ଥିତଂ ॥
ଓଁକାର ବ୍ରହ୍ମରୂପଂ ଚ ପଦ୍ମାସନ କାଷ୍ଠ ସୂକ୍ଷ୍ମୟେ ॥
ଘଟପ୍ରତେ ସାକ୍ଷୀରୂପଂ ଚ ଆତ୍ମାଜ୍ଞାନମୟଃ ତତ୍ତ୍ୱ ।
ଦର୍ପଣେ ପ୍ରତିବିମ୍ବସ୍ୟ ସର୍ବଭୂତେମୟଃ ହରି ।
ଅନୁଭବ କୃଷ୍ଣ ସାରଂ ଗୁରୁନାମ ଭୂ ଅପରଂ ।
ଶଶୀ ଚନ୍ଦ୍ରନେ ମଙ୍ଗଳଂ ଓଁ ଅଙ୍ଗୁଷ୍ଠି ରେଖାରୂପକଂ ॥

ହୁଁ କାର ସ୍ୱରୂପ କୃଷ୍ଣ ହସ୍ତମାତ୍ର ଅଟେ । ବିସ୍ଥାନ ହିମାହାତ୍ରେ ପ୍ରଣବାକ୍ଷରପ୍ରକଟେ । ଅଷ୍ଟଅଙ୍ଗ ଚତୁଃଷ୍ଟାଦ ପ୍ରଣବ ଏ ତନ । ପଞ୍ଚଅଙ୍ଗ ହିଶିଷ୍ଟ ଏ ଜାଣନ୍ତୁ ସୁଜ୍ଞାଏ ॥ ବ୍ରହ୍ମା ବିଷ୍ଣୁ ଶିବ ଆତ୍ମା ଓଁକାର

ବେଷ୍ଟିତ ॥ ପଞ୍ଚ ଦେବତା ଆବୃତ୍ତ କରିଛନ୍ତି ନିତ୍ୟ । ୧୧୦। ପୂରକ ଯେ ସାକ୍ଷାତ୍ ବ୍ରହ୍ମ କର ଅନୁଭବ । କୁମ୍ଭକ ବିଷ୍ଣୁ ଅଟନ୍ତି ରେଚକଟି ଶିବ ॥ ଶାଟକ ଶକ୍ତି ସ୍ୱରୂପା ନାଦ ବାସ୍ତୁ ସ୍ଥାନ । ସପ୍ତମ ବିନ୍ଦୁ ସାଗର ପରାପର ଶୂନ୍ୟ ଊର୍ଦ୍ଧ୍ୱ ଶୂନ୍ୟ ମଧ୍ୟ ଶୂନ୍ୟ ଅଧୋ ଶୂନ୍ୟ ଭିନ୍ନ । ଲୟ ଶୂନ୍ୟ ହଂସ ଶୂନ୍ୟ ପ୍ରେମ ଶୂନ୍ୟ ଧ୍ୟାନ ॥ ବୈକୁଣ୍ଠ ଆସନ ସାଜ ଆସନ କରିବ । ରାଧା ମାଧବ ସ୍ୱରୂପ ତହିଁ ଯୋଗାଇବ ॥ ପାଦପଦ୍ମ ସେବା ବାରି ପ୍ରେମ ସମର୍ପିବି । ଗଦଗଦ୍ ସ୍ୱରରେ ବନ୍ଦନା ବନ୍ଧୁ ହର୍ଷିବ ॥ ଏପରି ସାଧକ ସାଧନାରେ ଯୁକ୍ତ ହେବ । ତ୍ରିକାଳ ବାରିଣି ହଂନ ସୂତ୍ରେ ମିଳାଇବ ॥ ମୂଳଟି ବିଶ୍ୱାସ ଅଟେ ହେତୁ କରି ଧର । ଆଖିରେ ଆଖି ଲକ୍ଷିଲେ ଦେଖିବୁ ଶ୍ରୀଧର ।୧୧୫। ବାଉଳ ମନର କେତେ ଦୂରେ ମନ ଅଛୁ । ସୁଜନ କୁମର ବୋଲି ତୋ ଆଗେ କହୁଛୁ ॥ ଶୁଣିଲୁ ମନ ଗଜନ ଅନୁଭବେ ଧର । ଭଗବତ ସ୍ୱରୂପକୁ କରିବା ବିସ୍ତାର ॥



ଶ୍ରୀ ଭଗବତର ଅର୍ଥ କରିବା ପ୍ରଚ୍ଛିନ୍ନ । ଉଦ୍ଧବ ମାଧବ ସମ୍ବାଦ ଏ ସାରମର୍ମ ॥ ଶ୍ରୀ ଭଗବତ ଶାସ୍ତ୍ରର ପୂର୍ବ ବିବରଣ । ବାରସ୍କନ୍ଧ ଭଗବତ

ଆଦ୍ୟ ଜନ୍ମ ଶୁଣ ॥ ଅନନ୍ତଙ୍କ ଶ୍ରୀମୁଖରୁ ଜାତ ହୋଇଛଇ । ଭଗବାନ
ଭାଗବତ ଏକ ଅଙ୍ଗ କହ୍ନ ।୧୨୦। ସ୍ୱୟଂ ଭଗବାନ ତ୍ରି ଅକ୍ଷର ଜାତ
କଲେ । ହ୍ଲୀଇଁ ଶ୍ରୀଇଁ କ୍ଲୀଇଁ ସ୍ୱୟ ବୀଜ ବୋଲାଇଲେ ॥
ଚତୁର୍ବିଂଶ ଶ୍ଳୋକଃ ବ୍ରହ୍ମା ବିଜ୍ଞ କହିଲେ । ଚ୍ଛର ଶ୍ଳୋକେ ନାରାୟଣ
ବୁଝାଇଣ ଦେଲେ ॥ ନାରଦ ଦଶ ଶ୍ଳୋକରେ ପ୍ରଚ୍ଛିନ୍ନ କରିଲେ ।
ସତ୍ୟବନ୍ତ ସୂତ ଅଷ୍ଟାଦଶ ଶ୍ଳୋକ କଲେ ॥ ଶୁକଦେବଙ୍କୁ ବୁଝାଇ
କହ୍ନି ବ୍ୟାସଦେବ । ପରୀକ୍ଷେ ଶୁକ କହିଲେ ଭାଗବତ ଭାବ ॥
ବସୁଦେବ କହିଲେ ନାରଦ ତପୀମଣି । ନମି ରାଜାଙ୍କୁ କହିଲେ କବ
ମହାମୁନ ।୧୨୫। ଅବଧୂତ ବୁଝାଇଲେ ଯଦୁ ରାଜନଙ୍କୁ । ସୂତ
ଶୌନକେ କହିଲେ ଶ୍ରୀ ଭାଗବତକୁ ॥ ଉଦ୍ଧବେ କୃଷ୍ଣ କହିଲେ ଶ୍ରୀବାର
ସ୍କନ୍ଧକୁ । ଷଡ଼ ସମ୍ବାଦ ହୋଇଲା ବୁଝାଅ ହୃଦକୁ ॥ ଭାଗବତ ଚ୍ଛରକ୍ଷର
ଭାବକୁ କର ଚ୍ଛୁ । ଭକାର ଭାବ ଜନ୍ମଇ ସ୍ମର ସୁଚିତ୍ତକୁ ॥ ଗ କାର
ଅଟଇ ଜ୍ଞାନ ଉଦୟ ହୋଇବ । ଗ କାରୁ ଜ୍ଞାନ ଉଦୟେ କର
ଅନୁଭବ । ବ କାରୁ ବ୍ରହ୍ମା ଉତ୍ପତ୍ତି ବିରାଟ କାହାଣୀ । ତ କାର ତତ୍ତ୍ୱ
ଅଟଇ ଅମୂଲ୍ୟର ଖଣି ।୧୩୦। ଭାଗବତ ବାରସ୍କନ୍ଧ ଶ୍ରୀକୃଷ୍ଣ ଅଟନ୍ତି ।
କେଉଁ ସ୍ଥାନେ କେଉଁ ସ୍କନ୍ଧ ବିହାର କରନ୍ତି ॥ ପ୍ରଥମ ଦ୍ୱିତୀୟ ସ୍କନ୍ଧ
ପାଦରେ ଅଛଇ । ତୃତୀୟ ସ୍କନ୍ଧ ଗୁହ୍ୟରେ ଦଇଠି ଅଟଇ । ଚତୁର୍ଥ
ସ୍କନ୍ଧ କଟିରେ ବିହରଇବାରୁ । ନାଭିରେ ପଞ୍ଚମସ୍କନ୍ଧ ହେତୁ ରହିଥିବୁ॥
ହୃଦ ଦେଶ ଷଷ୍ଠ ସ୍କନ୍ଧ କ ଶୋଭା ଦିଶଇ । ସପ୍ତାଷ୍ଟମ ସ୍କନ୍ଧ ବାହୁ ହୟେ
ବିରାଜଇ । କଣ୍ଠରେ ନବମ ସ୍କନ୍ଧ ଦିଶେ ପ୍ରଫୁଲ୍ଲିତ । ଶ୍ରୀମୁଖେ ଦଶମ
ସ୍କନ୍ଧ ଲୀଳାର ଚରିତ ।୧୩୫। ଦୁଇ ଚକ୍ଷୁ ଲଲାଟରେ ଏକାଦଶ ସ୍କନ୍ଧ ।
ଶିରରେ ବସିଣଛନ୍ତି ଦୁଇଦଶସ୍କନ୍ଧ । ଭାଗବତ ସ୍ୱରୂପଟି ଶ୍ରୀକୃଷ୍ଣ ଅଟନ୍ତି।
ଭଗବାନ ଭାଗବତ ଅଭିନବ ମୂର୍ତ୍ତି ॥ ଓଁ ନମୋ ଭଗବତେ ବାସୁ-
ଦେବାୟ ଚନ୍ତ । ଓଁକାର ରୂପରେ ଖେଳୁଛନ୍ତି ଭାଗବତ ॥ ଓଁକାର
ରୂପେ ଶ୍ରୀକୃଷ୍ଣ ହେଲେ ଭାଗବତ । ଓଁ କାର ଗାୟତ୍ରୀ ହୋଇ ଖେଳୁଛୁ

ଜଗତ ॥ ଓଁକାର ଗାୟତ୍ରୀ ତତ୍ତ୍ୱ ଶୁଣ ମନଦେଇ । ଓଁ ତତ୍ସବିତୁ-
ର୍ବରେଣ୍ୟ ଆଠକ୍ଷର ହୋଇ ॥ ଭର୍ଗୋଦେବୋସ୍ୟ ଧୀମହି ଆଠଟି
ଅକ୍ଷର । ଧୀୟୋନଂ ପ୍ରଚୋଦୟାତ୍ ଚବଶ ଅକ୍ଷର ।୧୪୦। ଜଗତେ
ଗାୟତ୍ରୀ ହୋଇ ବ୍ୟାପିଛନ୍ତି ଷଡ଼ପଦା॥ଷସରଜପରବଦ ମିଶି ଚତୁଃଷ୍ପଦା॥



## ବ୍ୟାହୃତି ଚୂଡ଼ା ସାବିତ୍ରୀ ଷଟ୍‌କର୍ମ

ଓଁ ଭୂ ଓଁ ବ ଓଁ ସ୍ୱହଂ ।
ଓଁ ମହଂ ଓଁ ଜନଂ ଓଁ ତପଃ ।
ଓଁ ସତ୍ୟ ଆପଜ୍ୟୋତି ରସମୃତ ବ୍ରହ୍ମ ।
ଓଁ ଭୂ ଓଁ ଭୂର୍ବ ସ୍ୱରହଂସ ସୋହଂ ॥

ଗାୟତ୍ରୀ ଦ୍ୱାଦଶ ଅଙ୍ଗ ଶୁଣ ମନଦେଇ । ଭକତେ ଜାଣନ୍ତି ଏହା ନ ଜାଣନ୍ତି କେହି ॥ ଦ୍ୱାଦଶ ନାମର ନାମ କରିବା ପ୍ରଚ୍ଛିନ୍ନ । ଦ୍ୱାଦଶ ସ୍ଥାନର ନ୍ୟାସ ଗାୟତ୍ରୀ କ ଶୁଣ ॥ ମୁଖ ନାଶା ଚକ୍ଷୁ କର୍ଣ୍ଣ ଶୃଙ୍ଗ ଚୂଳ ସ୍ତନ । ପାଦ ଲୋମ ଚର୍ମ ସଙ୍ଗେ ଅସ୍ଥି ପୁଚ୍ଛ ଜାଣ ॥ ଏ ବାର ସ୍ଥାନରେ ଯେଉଁ ଅକ୍ଷର ଅଛଇ । କହିବା ପ୍ରଚ୍ଛିନ୍ନ କରି ପ୍ରତେଶିବୁ ତୁହି ।୧୪୫। ସ ସ ତ ଗ୍ର ଚ୍ଚରିକ୍ଷର ମୁଖରେ ରହିଲା । ଚ ଜ ବୀ ଭୁ ଚ୍ଚରିକ୍ଷର ନାଶାରେ ନ୍ୟାସିଲା ॥ ପ ର ବ ରେ ଚ୍ଚରିକ୍ଷର ନେତ୍ର ସ୍ଥାନେ ରହି । ବ ଦ ଣି ଯୁଂ ଚ୍ଚରିକ୍ଷର କର୍ଣ୍ଣେ ସମ୍ଭବଇ ॥ ଭ ର୍ଗୋ ଦୁଇକ୍ଷର ଶୃଙ୍ଗ ସ୍ଥାନରେ ରହିଲା । ଦେବକ୍ଷର ଦୁଇ ଯାଇ ଚୂଳେ ବଶ୍ରାମଇ ॥ ସ୍ୱାଧି ଦୁଇକ୍ଷର ଅଛି ସ୍ତନରେ ପୂରିଣ । ମସ୍ତି ରହିଅଛି ଯାଇ ଚରଣ ସ୍ଥାନେଣ ॥ ଧୀ ଓ ଦୁଇକ୍ଷର ଲୋମ ମଧ୍ୟେ ଅଛି ଯାଇ । ଯୁ ନଂ ଦୁଇ କ୍ଷର ଚର୍ମ ସ୍ଥାନେ ରହିଛଇ । ୧୫୦ । ପ୍ର ଚ୍ଚେ ଦୁଇକ୍ଷର ଅସ୍ଥି ମଧ୍ୟରେ ରହିଲା । ଦୟା ବେନାକ୍ଷର ପୁଚ୍ଛ ମଧ୍ୟେ ପ୍ରକାଶିଲା ॥ ଭୂ ଭୂର୍ବ ଏଯୂକ୍ଷର ମୁଖରେ ଅଛଇ । ସ୍ୱ ହଂ ମ ହଂ ଚ୍ଚରିକ୍ଷର ନାଶାରେ ଖେଳଇ ॥ ଜ ନ ତ ପ ଚ୍ଚରିକ୍ଷର ନେତ୍ରରେ ରହିଲେ । ସ ତ୍ୟ ଆ ପ ଚ୍ଚରିକ୍ଷରେ କର୍ଣ୍ଣେ ଠାବକଲେ । ଜ୍ୟୋ ତି ଦୁଇକ୍ଷର ଶୃଙ୍ଗ ମୂଳରେ ରହିଲା । ରଂ ସ ଦୁଇକ୍ଷର ଚୂଳ ମଧ୍ୟେ ଝକଶିଲା । ମୃ ତ ବ୍ର ହ୍ମ ଚ୍ଚରିକ୍ଷର ସ୍ତନ ତେଟରେ ରହି । ହଂ ସ ସୋ ହଂ ଚ୍ଚରିକ୍ଷର ପାଦେ ଝକଶଇ । ୧୫୫ । ଭୂ ଏକ ଅକ୍ଷର

ଲୋମ ମଧ୍ୟରେ ରହିଛି । ର୍ଖ୍ଵ ବ ଦୁଇଅକ୍ଷର ଚର୍ମସ୍ଥାନେ ବସନ୍ତୁଛି ॥ ସ୍ମ ଏକ ଅକ୍ଷର ଅସ୍ଥି ମଧ୍ୟରେ ଅଛଇ । ର ଏକ ଅକ୍ଷର ପୁଚ୍ଛ ସ୍ଥାନେ ଶୋଭାପାଇ ॥ ଏପରି ଗାଭିର ରୂପ କି ଦେବା ଉପମ । ବାରଘରେ ଗାଈ ପଶି ଖେଳଇ ଗାରିମା ॥ ଦ୍ଵାଦଶ ସ୍ଥାନରେ ଚତୁଃଷଷ୍ଟି ଅକ୍ଷର ଭରି । ଖେଳୁଅଛି ସେହି ଗାଈ ଅମାନିଆ ହୋଇ ॥ ଲୁଚିଛ ରଖିଛି ଗାଈ ତାହାର ଶରୀର ॥ ମୁଖରେ ସ୍ତନକୁ ରଖି କରେ କାରବାର ॥ ନାଶାରେ ପାଦ ଲୁଚାଇ ଗୁପତେ ରଖିଛି । ନେତ୍ର ଘରେ ଲୋମ ଚର୍ମ ଲୁଚାଇ ରଖିଛି ॥ ଅସ୍ଥି ପୁଚ୍ଛକୁ କର୍ଣ୍ଣରେ କି ସୁନ୍ଦେ ଥୋଇଛି । ମସ୍ତକରେ ଶୃଙ୍ଗ ଚୂଳ ପ୍ରକାଶ ପାଇଛି ॥ ନଗମ ସ୍ଥାନରେ ତା'ର ଭ୍ରମଣ ଅଟଇ । ବଙ୍କୁନାଳ ଜଳରେ ସେଠାରେ ଆଶାଥାଇ ॥ ଦ୍ଵାଦଶ ଅଙ୍ଗୁଳେ ଖେଳ ତ୍ରିକୂଟ ଆସନ । ଦୁର୍ଦ୍ଧ ରୋଖି ଅଟଇ ଗଉଡ଼ ଚୈତନ୍ୟ ॥ ତ୍ରିକାଳରେ ଜଗିଅଛି ଯଷ୍ଟି ହସ୍ତେ ଧରି । ବେଳକାଳେ ଗୋଦୋହନ କରେ ଘଟ ଧରି ॥ ଗୋଦୋହନ ସୂତ୍ର ଏକା ଜାଣନ୍ତି ମୋହନ । ଲକ୍ଷ୍ମୀଙ୍କ ସୂକ୍ଷ୍ମରେ ଥାନ୍ତି ଜଗତଜୀବନ ॥ ଗୋ ଦୋହନ ସୂକ୍ଷ୍ମ ପଦ୍ମ ଆସନରେ ଥାଇ । ପଦ୍ମ ଆସନରେ ମନ ନିଶ୍ଚଳ ହୁଅଇ ॥ ବାରଘରୁ ଆସି ଗାଈ ଏକାଠି ରହିବ । ପ୍ରେମ ଦଉଡ଼ି କି ଧରି ନାମ ଖେଳାଇବ । ଅମନ ସୂକ୍ଷ୍ମରେ ଗାଈ ଠିଆ ହୋଇଯିବ । ନ ପଡ଼ିବ ଆଖି ଆଉ ଡୋଳା ନ ହଲିବ ॥ ପାଦପଦ୍ମ ଚକ୍ଷୁ ଯେବେ ପ୍ରେମରେ ଦେଖିବ । କି ଶୋଭା ଦିଶିବ ଗାଈ ବନ୍ଧା ହୋଇଯିବ । ୧୬୦ । ବସି ଗୋଦୋହନ କର ସ୍ଥିର ଚେର ଧରି । ଷୋଳନାମ ବହିଯିବ ଅମନରୁ କ୍ଷରି ॥ କାମଧେନୁ ଗାଈ ସେହି ଅକଳଣା କ୍ଷୀର । ଯେତେ ନେଇ ପାର ତେତେ ଝରୁଥିବ ଧାର ॥ ସେ ବଡ଼ ଅଳିଆ ଗାଈ ପଶେ ବାରଘରେ । ବାନ୍ଧିପାରୁ ଯେବେ ଖୁଣ୍ଟେ ପଘା ଧରି କରେ ॥ ବାନ୍ଧିବାର ଯେ ଜାଣଇ ସେ ଅଟେ ବ୍ରାହ୍ମଣ । ନୋହିଲେ ଶୂଦ୍ରତି ସେହି ଭଲେ ବୁଝି ଚିହ୍ନ ॥

ଶ୍ଳୋକଃ
ଜନ୍ମନା ଜାୟତେ ଶୂଦ୍ର କର୍ମଣା ଦ୍ଵିଜ ଉଚ୍ୟତେ ।
ବେଦାଭ୍ୟାସେ ଭବେତ୍ ବିପ୍ର ବ୍ରହ୍ମ କର୍ମେଣ ବ୍ରାହ୍ମଣ ॥

ପ୍ରଥମେ ଶୂଦ୍ର ଜନମ କର୍ମେ ଦ୍ଵିଜବର । ବେଦ ଅଭ୍ୟାସ କରିଲେ କହେ ବିପ୍ରବର ।୧୭୬। ବ୍ରହ୍ମକର୍ମ ଚତୁଃଷ୍ଟାବ ଗାୟତ୍ରୀ ଯେ ଜାଣେ । ସେ ଅଟେ ବ୍ରାହ୍ମଣ ଗାଈ ଛନ୍ଦ ଛନ୍ଦ ଜାଣେ ॥ ତାହାକୁ ବ୍ରାହ୍ମଣ ବୋଲି ବୋଲିବ ଜଗତେ । ମୁଖେ କହିଲେ କ ହେବ ଚିନ୍ତୁ ମୂର ବୁଝେ ॥ ଗାୟତ୍ରୀ ଚତୁଃଷ୍ଟାଙ୍କୁ ସଦା ନ୍ୟାସ କର । ଏ ସୂତ୍ର ଯେ ଜାଣିଥାଇ ସେ ବ୍ରହ୍ମ କୁମର ॥ ଏ ଭାବନା ଜାଣି ଯେତୁ ବ୍ରାହ୍ମଣ କହାଇ । ତକାଗ ହାଣ୍ଡିରେ ଚିନ୍ତୁ ଯେସନେ ରହଇ ॥ ଅନୁଭବେ ଲୁଖ କ୍ଷୀର ଗାଈ ହେବ ଶାନ୍ତ । ଭୁ ଭୁ ବ ସ୍ଵଃ ଅଛନ୍ତି ନନ୍ଦରାଜା ସୁତ ।୧୮୦। ଗାୟତ୍ରୀ ଛନ୍ଦ ପାଇଣ ମନକର ଥୟ । ବାହ୍ମଣର କର୍ମ ଏ ଜଗତେ ପ୍ରକାଶୟ ॥ ବ୍ରାହ୍ମଣର କର୍ମ ସିନା ବ୍ରାହ୍ମଣ ହୋଇଛି । କର୍ମ ନ କରି କହିଲେ ଲାଭ ନାହିଁ କିଛି ॥ ଗାବ ଅଙ୍ଗ ସ୍ଥିର ହେଲେ ବ୍ରାହ୍ମଣ ହୋଇବ । ଏ କଥା ସତ୍ୟ ଅଟଇ କର ଅନୁଭବ ॥ ଆଗେ ବୁଦ୍ଧ ଜନମାନେ ନ ଘେନ ମୋ ଦୋଷ । ବ୍ରାହ୍ମଣଙ୍କ ହିତପାଇ କହିଲି ଏ ରସ ॥ ଏହାଦ୍ଵାରା ତୁମ୍ଭର ଯେ ହୋଇବ ସନ୍ତୋଷ । ଦୋଷଥିଲେ କ୍ଷମାକର ବ୍ରାହ୍ମଣ ବିଦୁଷ ।୧୮୫। ଭଗବତ ଗାୟତ୍ରୀର ତତ୍ତ୍ଵ ହେଲା ଶେଷ । ଆଜ୍ଞ ତୋ ମନରୁ କଥା ଫେଡ଼ ବ୍ରହ୍ମଶିଷ୍ୟ ॥ ଅଳଆ ଘଟରେ ରହି ଅଳ କରୁଅଛି । ଶ୍ୟାମସୁନ୍ଦରଙ୍କୁ ରଖ ଶରଣ ମାଗୁଛି । ଏକଶତ ଅଠାଅଶି ପଦେ ଅଧ୍ୟାଶେଷ । ଅଚ୍ୟୁତ ଦାସଙ୍କ ଶିଷ୍ୟ ଅଚ୍ୟୁତରେ ଆଶ ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସମ୍ବାଦାୟାଂ ଭଗବତ ଗାୟତ୍ରୀ ଉପଦେଶ କଥନେ ନାମ ଦଶମ ଅଧ୍ୟାୟଃ ।

—*—

# ଏକାଦଶ ଅଧ୍ୟାୟ

### ମନ ଉବାଚ

ନମସ୍ତେ ଅନାଦିଦେବ ଜଗତ ଠାକୁର । ନମସ୍ତେ ଆଦ୍ୟ ଅଙ୍କରେ ବିହାର ତେହାର ॥ ନମସ୍ତେ ବିରାଟ ରୂପୀ ବିରାଟ ଶରୀର । ନମସ୍ତେ ପଞ୍ଚାଶ ବର୍ଣ୍ଣ ମଧ୍ୟେ ତୋ ବିହାର ॥ ବିନ୍ଦୁରୁ ସୃଷ୍ଟି ହୋଇଣ ବିନ୍ଦୁରେ ରହିଛ । ଅର୍ଦ୍ଧମାତ୍ରା ସ୍ଥିତି ହୋଇ ଜଗତେ ବ୍ୟାପିଛ ॥ ଓଁକାରେ ପ୍ରଳୟ କର ପଞ୍ଚାଶ ବର୍ଣ୍ଣକୁ । ନିଃଶବ୍ଦ ଶବ୍ଦ ରୂପରେ ଧାରନ୍ତ ଭୂମଙ୍କୁ । ନିରାଶ୍ରୟ ବନ୍ଧୁ ତୁମ୍ଭେ ସକଳ ଗୋଚର । ନିରାଶ୍ରୟ ହୋଇ ଡାକୁଅଛି ନିରନ୍ତର । * ନିରାଶ୍ରୟ ବନ୍ଧୁ ନାମ ଜଗତେ ବିଦିତ । ନିରାଶ୍ରୟେ ଆଶ୍ରୟ ପ୍ରଦାନ ରାଧାକାନ୍ତ ॥ ମିଛୁଆ ହୋଇଲେ ତୁମ୍ଭେ ବ୍ୟାଜ ହେବ କା'କୁ । ଅର୍ଜିଅଛି ସର୍ବ ଦୋଷ ନିଜ କପାଳକୁ ॥ ଯାହା ଇଚ୍ଛା ତାହା କର ମମ ପ୍ରାଣବନ୍ଧୁ । ବଳିପରି ଦେଇଅଛି ନବଦ୍ୱୀପ ବନ୍ଧୁ ॥ ଅଧିକା କହିବା ମୋର ନାହିଁ ସାମରଥ । ବାଞ୍ଛିଲ ସଡ଼ିଣ ଯାଉ ତୋର ପାଦଗତ ॥

### ଶ୍ଳୋକଃ

ରୂପଂ ରୂପ ବିବର୍ଜିତସ୍ୟ ଭବେତ୍ ଧ୍ୟାନେନ ଯଦ୍‌ବର୍ଣ୍ଣିତଃ ॥
ସ୍ତୁତ୍ୟ ନିର୍ବଚନୀୟତାଖିଳ ଗୁରୋ ଦୂ'ରୀକୃତା ଯନ୍ମୟା ॥
ବ୍ୟାପିତ୍ୱଂ ଚ ନିରାକୃତଂ ଭଗବତୋ ଯଃ ତୀର୍ଥେ ଯାତ୍ରାଦିନା ।
କ୍ଷନ୍ତବ୍ୟଂ ଜଗଦୀଶ ତଦ୍ ବିକଳତା ଦୋଷତ୍ରୟଂ ମତ୍କୃତଂ ॥

ରୂପରେଖ ନାହିଁ ତବ ତୁମ୍ଭେ ନିରାକାର । କିନ୍ତୁ ବେଦ ବର୍ଣ୍ଣିଅଛି ରୂପକୁ ତୁମ୍ଭର । ୧୦ । ଅନିର୍ବଚନୀୟ ଖିଳନାଥ ପ୍ରଭୁ ତୁମ୍ଭେ । କି ସ୍ତୁତି କରିବ ମୁହିଁ କବିତା ସୌରଭେ ॥ ସଦା ସର୍ବଠାରେ ହରି ତୁମ୍ଭେ ଅଛ ରହି । ଆପଣ ନ ଥିବା ସ୍ଥାନ ଜଗତରେ ନାହିଁ ॥

ତୁମ୍ଭ ଠାରେ କରିଛୁ ମୁଁ ଏହି ତିନ ଦୋଷ । କ୍ଷମାକର ବା ନ କର ଦୋଷ ହେ ଦେବେଶ ॥ ଏକାଦଶ ଅଧ୍ୟାୟକୁ ବଳାଇଛୁ ଆଶ । କହି ତୋଷ କର ପ୍ରଭୁ ହେ ବଂଶୀ ବିଳାସ ॥

ଶ୍ଳୋକଃ

ନନ୍ୟ ବଦାମି ନ ଶୃଣୋମି ନ ଚିନ୍ତୟାମି ।
ନାସ୍ୟଂ ସ୍ମରାମି ନ ଭଜାମି ନ ଚାଶ୍ରୟାମି ॥
ଭକ୍ତ୍ୟା ତ୍ୱଦୀୟ ଚରଣାମ୍ବୁଜ ମନ୍ତରେଣ ।
ଶ୍ରୀ ଶ୍ରୀନିବାସ ପୁରୁଷୋତ୍ତମ ଦେହିଦାସ୍ୟଂ ॥

ଅନ୍ୟ କିଛି ନ ବାଞ୍ଛଇ ନ ଶୁଣଇ କର୍ଣ୍ଣେ । ଅନ୍ୟ କିଛି ନ ଚିନ୍ତେ ନ ଭଜେ ଆନମନେ । ୧୯ । ଅନ୍ୟ ଆଶ୍ରା ନାହିଁ ତବ ପାଦପଦ୍ମ ବିନା । ତହିଁ ଭକ୍ତି ଦିଅ ପ୍ରଭୁ କର ହେ କରୁଣା ॥ ଦିଅ ବା ନ ଦିଅ ମମ ପ୍ରାଣ ହୃଷିକେଶ । ଦୟାକର କେଉଁ ଜନ୍ମେ ଜନ୍ମେ ତବ ଦାସ ॥

ଶ୍ଳୋକଃ

ପୂଜା କୃତା ନ ହି କଦାପି ମାୟା ତ୍ୱଦୀୟା ।
ମନ୍ତ୍ର ତ୍ୱଦୀୟୋ ମପି ମେ ନ ଜପେତ୍ତ୍ୱ ସଜ୍ଜ୍ୱା ॥
ଚିତ୍ତଂ ନମୋଃ ସ୍ମରତିତେ ଚରଣୋ କଦାଚିତ୍ ।
ତସ୍ମାତ୍ତ୍ୱମଦ୍ୟ ଶରଣଂ ମମ ଦୀନବନ୍ଧୁ ॥

କେତେବେଳେ ପୂଜା ମୁହିଁ ନ କରେ ତୁମ୍ଭଙ୍କୁ । କେବେ ନ ଜପେ ମୋ ଜିହ୍ୱା ତୁମ୍ଭର ମନ୍ତ୍ରକୁ ॥ ତବ ପାଦପଦ୍ମ ଯୁଗଳକୁ ମୋର ଚିତ୍ତ । କେବେ ସ୍ମରଣ ନ କରେ ଆହେ ଜଗନ୍ନାଥ ॥ ତେଣୁ ଅତ୍ୟନ୍ତ ଦୀନ ମୁଁ ନାହିଁ ଗତି ମୋର । ଆଜ ପଶିଲି ଶରଣ ରଖ ବଂଶୀଧର । ୨୦ ।

ଶ୍ଳୋକଃ

କୃଷ୍ଣ ତ୍ୱଦୀୟ ପଦପଙ୍କଜ ପିଞ୍ଜରାନ୍ତେ ।
ଅଦ୍ୟୈବ ମେ ବଶତୁ ମାନସ ରାଜହଂସ ॥

ପ୍ରାଣ ପ୍ରୟାଣ ସମୟେ କଫ ବାତପିତ୍ତୈ ।
କଣ୍ଠାବରୋଧନ ବିଧୌ ଶରଣଂ କୁତସ୍ତେ ॥

ହେ କୃଷ୍ଣ ତୁମ୍ଭର ପାଦପଦ୍ମ ପଞ୍ଜରରେ । ରାଜହଂସ ହୋଇ ମନ ରହୁ ନିରନ୍ତରେ ॥ କ୍ରୀଡ଼ା କରୁଥାଇ ଯେଣୁ ପ୍ରାଣ ଯିବାବେଳେ । କଫ ବାତ ପିତ୍ତ ଆଦି ରୋଗଙ୍କ ସଙ୍କୁଳେ ॥ କଣ୍ଠ ଅବରୁଦ୍ଧ ହୋଇଥିବ ତେଣୁ କରି । କହି ନ ପାରିବ ତବ ନାମ ହେ ମୁରାରି ॥

ଶ୍ଳୋକଃ

କୃଷ୍ଣ ନାମଂ ପରମଙ୍ଗଳଂ କୃଷ୍ଣ ନାମଂ ପରାଗ୍ସ୍ଥିତି ।
କୃଷ୍ଣ ନାମଂ ପରମଦାନଂ କୃଷ୍ଣ ନାମ ଜଗତ୍ ପ୍ରିୟଂ ॥

ଶ୍ରୀକୃଷ୍ଣ ନାମ ଅଟଇ ଜଗତରେ ମଙ୍ଗଳ । ଜୀବର ପରମଧାମ ଅଟେ କୃଷ୍ଣ ନାମ ॥ କୃଷ୍ଣ ନାମ ମହାଦାନ ଅଟଇ ନିଶ୍ଚୟ । ସମସ୍ତଙ୍କର ଶ୍ରୀକୃଷ୍ଣ ନାମ ଅଟେ ପ୍ରିୟ । ୨୫ ।

ଶ୍ଳୋକଃ

ମାମତି ପରଦାରେଷୁ ପରଦ୍ରବ୍ୟେଷୁ ମାମତି ।
ମତିର୍ଭବତୁ ଗୋବିନ୍ଦଂ ମମ ଜନ୍ମନି ଜନ୍ମନି ॥

ପରଦାରକୁ ମୋ ମତି କଦାପି ନ ବଳୁ । ପରଧନ ଦେଖି କେବେ ମୋ ମତି ନ ଚଳୁ ॥ ଆଜୀବନ ରହୁ ମତି ଗୋବିନ୍ଦ ପଦ୍ମରେ । ଆନନ୍ଦେ ଆବାସ କରି ରହୁ ନିରନ୍ତରେ ॥

ମନର ପ୍ରାର୍ଥନା

ନମସ୍ତେ ନମସ୍ତେ କୃଷ୍ଣ ଅନନ୍ତ ମୂରତି । ନମସ୍ତେ ପରମ ବ୍ରହ୍ମ ଦେବ ବିଶ୍ୱପତି ॥ ନମସ୍ତେ ନମସ୍ତେ ଜଗଜ୍ଜନ ହିତକାରୀ । ନମୋ ନମୋଃ ପରମାତ୍ମା ନମସ୍ତେ ମୁରାରି ॥ ନମସ୍ତେ ପ୍ରଣିତ ଜଧ କେଶୀ ନାଶକାରୀ । ନମୋ ନମୋଃ ଦୟାମୟ ଗୋବିନ୍ଦ ମୁରାରି । ୩୦ । ନମସ୍ତେ ନମସ୍ତେ କୃଷ୍ଣ ବସୁଦେବ ହରି । ନମୋ ନମୋଃ ଶ୍ରୀକୃଷ୍ଣ

ଗୋବିନ୍ଦ ବେଣୁଧାରୀ ॥ ନମସ୍ତେ ନମସ୍ତେ ପରଂବ୍ରହ୍ମ ଦେବ ଦେବ । ଗୋ ବ୍ରାହ୍ମଣ ହିତକାରୀ ନମସ୍ତେ ମାଧବ । ନମସ୍ତେ ନମସ୍ତେ ଯୋଗାଧିପ ଯୋଗେଶ୍ୱର । ତବ ପଦେ ଶରଣ ମୋ ଅଟେ ନିରନ୍ତର ॥ ଏ ଘୋର ସଂସାର ଅଟେ ନରକ ସାଗର । ତରିବାକୁ ଏଥୁ ଏକା ଯେତୁ କର୍ଣ୍ଣଧାର । ନାରକାରୀ ସେହି ବସ୍ତୁ, ଅଭୟ ପଦରେ । ଯମ ଭୟୁ ତରିବାର ନମସ୍କାର କରେ ।୩୫।

ଶ୍ଳୋକଃ

କୃଷ୍ଣାୟ ବାସୁଦେବାୟ ଦେବକୀ ନନ୍ଦନାୟ ଚ ।
ନନ୍ଦ ଗୋପ କୁମାରାୟ ଗୋବିନ୍ଦାୟ ନମୋଃ ନମୋଃ ॥

ନମସ୍ତେ ନମସ୍ତେ କୃଷ୍ଣ ବସୁଦେବ ସୁତ । ନମୋ ନମୋଃ ଦେବକୀ ନନ୍ଦନ ଜଗନ୍ନାଥ ॥ ନମୋ ନମୋଃ ନନ୍ଦ ଗୋପସୁତ ପଦାମ୍ବୁଜେ । ଗୋବିନ୍ଦ ଗୋପାଳ ପଦେ ନମସ୍ତେ ନମସ୍ତେ ॥

ଶ୍ଳୋକଃ

ଅଚ୍ୟୁତ କଳ୍ପବୃକ୍ଷୋଽସେ ଅନନ୍ତଃ କାମଧେନବଃ ।
ଚିନ୍ତାମଣିଶ୍ଚ ଗୋବିନ୍ଦ ହରିନାମ ବିଚିନ୍ତୟେତ୍ ॥

ଅଚ୍ୟୁତ ନାମ ଗୋଟିକ କଳ୍ପ ବୃକ୍ଷସମ । କାମଧେନୁ ସମ ଅଟେ ଅନନ୍ତ ଯେ ନାମ ॥ ଚିନ୍ତାର ମଣି ଅଟନ୍ତି ଗୋବିନ୍ଦଙ୍କ ନାମ ତେଣୁ ହରି ଚିନ୍ତ ମନ ଲଭ ମୋକ୍ଷଧାମ ॥ ବାସୁଦେବଙ୍କର ଯେତୁ ଅଟଇ ଭକତ । ଗଦ୍‌ଗଦ ମାନସ ପୁଣି ଅଟେ ଶାନ୍ତ ଚିତ୍ତ ।୪୦। ତାହାଙ୍କର ଦାସ ହୋଇ ଜନ୍ମେ ଜନ୍ମେ ମୁହିଁ । ହେଉଥିବ ଜାତ ଭବେ ଏତିକି ଇଚ୍ଛଇ ॥ ପବଣ ବନ୍ଧୁ ସହସ୍ର ସହସ୍ର ଯୋଜନରେ । କରେ ଭ୍ରମଣ ପଛକେ ତହିଁ କ ନ ଡ଼ରେ ॥ ହେ ନାଥ ଅଚ୍ୟୁତ ତ୍ୟୁନ ନୋହୁ ମୋର ମତି । ଯଥା ତଥା ଜନ୍ମେ ତବ ପଦେ ଥାଉ ଭକ୍ତି ॥ ହରି ବୋଲି ଅଟଇ ଯେ ଦୁଇଟି ଅକ୍ଷର । ଉଚ୍ଚାରଣ କରୁ

ମନ ଛାଡ଼ା ଏକବାର । ବିପଦ୍ଗ୍ରସ୍ତ କାଳେ ବନ୍ଧୁ ବାନ୍ଧବ କୁଟୁମ୍ବ ॥ ସହାୟ ନୋହେ କାହାର କେବଳ ହେ କେଶବ । ୪୫ । ହେ କୃଷ୍ଣ କରୁଣାମୟ ଭକତ ବତ୍ସଳ । ଉଦ୍ଧାର କର ନ କର ମୋତେ ଆଦିମୂଳ ॥

## ଗାୟତ୍ରୀ ବଖାଣ

| | | | | | |
|---|---|---|---|---|---|
| ଶୁକ୍ଳଚନ୍ଦ୍ର | ଭର୍ଗୋ | ବେଦଂ | ଜ୍ୟୋତି | ରସଂ | ସ୍ୱର |
| ଅଗ୍ନିଚନ୍ଦ୍ର | ବରେଣ୍ୟଂ | ପ୍ରଚୋ | ତସ୍ମା | ସତ୍ୟଆପ | ଭୂର୍ଭୁବଃ |
| ପ୍ରେମଚର୍ମ | ପରବତେ | ଧୀଓ | ସୂନଂ | ଜନତପଂ | ହଂସ |
| ପ୍ରଃଦ | ରଜସ୍ତୁ | ମସ୍ତି | ସ୍ୱାହଂ | ମହଂ | ସୋହଂ |
| ସ୍ତନ | ସସତତ୍ର | ସ୍ୱଧ୍ୱ | ଭୂର୍ଭୁବଃ | ମୃତ | ବ୍ରହ୍ମ |

ଶ୍ଳୋକଃ

କୃଷ୍ଣ ନାମ ମହାଭକ୍ତିଃ କୃଷ୍ଣ ନାମ ପରାସ୍ତୁତିଃ ।
କୃଷ୍ଣ ନାମ ପରେ ଯଜ୍ଞେ କୃଷ୍ଣ ନାମ ପରମନ୍ତ୍ରଃ ।

କୃଷ୍ଣ ନାମ ଅଟଇ ଯେ ଭକ୍ତିର ଆଳୟ । କୃଷ୍ଣ ନାମ ମହାସ୍ତୁତି ଅଟଇ ନିଶ୍ଚୟ ॥ ମହାଯଜ୍ଞ ଅଟଇ ଯେ ଶ୍ରୀକୃଷ୍ଣ ଭଜନ । ସଦା କୃଷ୍ଣ ନାମ କର ହେ ମନ କୀର୍ତ୍ତନ ॥ ସେ ପୁରୁଷୋତ୍ତମ ନିତ୍ୟ ଅଜ ସନାତନ । ହରିଙ୍କ ପାଦପଦ୍ମରେ ସଦା ମୋ ଶରଣ ॥

ଶ୍ଳୋକଃ

ନନ୍ଦନଂ ବସୁଦେବସ୍ୟ ନନ୍ଦ ଗୋପ ବିବର୍ଦ୍ଧନଂ ।
ଦେବକୀ ନନ୍ଦନଂ ବନ୍ଦେ ଯଶୋଦା ନନ୍ଦନଂ ହରି ॥
କଂଚସ୍ୟତ ନୌଃ କଂ ଶ୍ରର୍ଥେ କ ତପୋ ଯେଭିଃ କ ମଧ୍ୱରୈଃ ।
ଯୋ ନିତ୍ୟ ଧ୍ୟାୟତେ ଦେବଂ ନଗୁଣା ମନସିସ୍ଥିତଂ ॥

ବସୁଦେବଙ୍କର ଯେହୁ ଅଟନ୍ତି ନନ୍ଦନ । ନନ୍ଦ ଆଦି ଗୋପାଳଙ୍କୁ କଲେ ଯେ ବର୍ଦ୍ଧନ । ୫୦ । ଦେବକୀ ଯଶୋଦାଙ୍କର ନନ୍ଦନ ଯେ

ହରି । ତାଙ୍କ ପଦପଙ୍କଜକୁ ବନ୍ଦନ ମୋହର ॥ କ କାରଣେ ଦାନ ତାରେ କ କାର୍ଯ୍ୟ ତୀର୍ଥରେ । କ କାରଣେ ତପ ତାରେ କି ଅବା ଯଜ୍ଞରେ ॥ ସବୁର ହୃଦୟେ ସ୍ଥିତ ଦେବ ଭଗବାନ । ତାଙ୍କୁ ଯେ ଧ୍ୟାଉଛି ସେହି ଅଟେ ମହାଜନ ॥ ପବିତ୍ର ବା ଅପବିତ୍ର ହୋଇ କଳେବର । ଯେଉଁ ପରି ଅବସ୍ଥାକୁ ଲଭୁ ଏ ଶରୀର ॥ ହରିତେ ନେବେ କୃଷ୍ଣଙ୍କୁ କରିଣ ସ୍ମରଣ । ରେ ମନ ତୁ ସିଦ୍ଧ ହୁଅ ଅନ୍ତରେ ଖୋଜିଣ ।୫୫। ଅଚ୍ୟୁତ ନନ୍ଦଗୋବିନ୍ଦ ଉଚ୍ଚାରଣ । ସର୍ବରୋଗର ଅବ୍ୟର୍ଥ ଔଷଧ ସେ ଜାଣ ॥ ସମସ୍ତ ରୋଗ ଏଥିରେ ହୋଇବ ବିନାଶ । ଗଧା ହୃଦୟୁ ବିଳାସ ହୋଇ ମୋ ବିଧ୍ୱଂସ ॥

ଶ୍ଳୋକଃ

ଶରୀରଂ ତ ନବଚ୍ଛିଦ୍ରଂ ବ୍ୟାଧିଗ୍ରସ୍ତଂ କଳେବରଂ ।
ଔଷଧଂ ଜାହ୍ନବୀତୋୟଂ ବୈଦ୍ୟ ନାରାୟଣଃ ସ୍ୱୟଂ ॥

ନବଦ୍ୱାର ନବଚ୍ଛିଦ୍ର ଅଛି ଏ ଶରୀର । ସକଳ ବ୍ୟାଧିର ପୁଣି ଅଟଇ ମନ୍ଦିର ॥ ହବାରଣେ ବୈଦ୍ୟ ଏକ ସ୍ୱୟଂ ବେଣୁଧର । ଗଙ୍ଗା ଜଳ ଔଷଧକୁ ପିଅ ସୁ ମଧୁର ॥

ଶ୍ଳୋକଃ

ଦାନଂ ବ୍ରତଂ ତପୋ ଯଜ୍ଞ ଶ୍ରାଦ୍ଧଂ ବା ପିତୃତର୍ପଣଂ ।
ସକଳଂ ନିଷ୍ଫଳଂ ଲୋକେ ହରି ସଂକୀର୍ତ୍ତନଂ ବିନା ॥
ଯୋ ଭାବ ଗଦ୍‌ଗଦଂ ଭୂତ୍ୱା ରୋଦିତ୍ୟ ଚ୍ୟୁତସନ୍ନିଧୌ ।
ତସ୍ୟ କୃଷ୍ଣଃ ପରାନନ୍ଦିତଃ ତସ୍ମାଦ୍ଭିଦ୍ୟନ୍ତଦେବତ ॥

ଯଜ୍ଞବ୍ରତ ତପକର ଯେତେ ଛଅ ଦାନ । ଶ୍ରଦ୍ଧାଯୁକ୍ତେ ଶ୍ରାଦ୍ଧ ଆଦ ପିତୃ ତରପଣ । ୭୦ । ହରି ନାମ ସଂକୀର୍ତ୍ତନ ବିନା ସେ ସକଳ । ସମକୁଳ୍ୟ ନୁହେଁ ମନ ହୁଅଇ ନିଷ୍ଫଳ ॥ ଭକ୍ତି ଭାବେ ଗଦଗଦ ହୋଇଣ ଯେ ଜନ । ହରିଙ୍କ ଆଗେ କରଇ ପ୍ରେମରେ ରୋଦନ ॥ ତାହାରେ

ଶ୍ରୀକୃଷ୍ଣ କଣା ହୁଅନ୍ତି ନଣ୍ଟପ୍ରେ । ସୁରଗଣେ ତାରେ ଖ୍ୟାତ କରନ୍ତି ହୃଦପ୍ରେ ॥ ଜଗତେ ସତ୍ୟ କେବଳ ହରିଙ୍କର ନାମ । ଜୀବମାନଙ୍କର ସେହି ପରମ ଧରମ ॥ ଶ୍ରୀକୃଷ୍ଣ ନାମ ଜୀବନ ଶରଣ ରକ୍ଷଣ । ଏକଚ୍ଛତ୍ରଂଶ ପୁରେ କୃଷ୍ଣ ନାମ ଅଟେ ଧନ୍ୟ ।୬୬। କୃଷ୍ଣ ନାମ କୀର୍ତ୍ତନର ଧର୍ମ ବଳନାହିଁ । କୃଷ୍ଣ ନାମଠାରୁ ତପ ଅଧିକ ନୁହଇ ॥ କୃଷ୍ଣ ନାମ ଅଟେ ସୁଖ ଶାନ୍ତିର ଭଣ୍ଡାର । କୃଷ୍ଣ ନାମ ଅଟେ ସର୍ବ ସୁଖଙ୍କର ଥାଉ ॥ ଭାବବଶେ କୃଷ୍ଣ ନାମ କରେ ଯେ କୀର୍ତ୍ତନ । ଗଦ୍‌ଗଦ ଭାବେ ଭୂମିରେ ହୁଅଇ ପତନ । ତା ପ୍ରେମ ଧନରେ କୃଷ୍ଣ କଣା ହୋଇ-ଥାନ୍ତି । ମୁକ୍ତିର ସୀମା ନୁହଇ ସତ୍ୟ ଏ ଭାରତୀ ॥ ଗୋବିନ୍ଦ ନାମ ମହିମା କେ କରିବ ଅନ୍ତ । ପବିତ୍ରମାନଙ୍କ ସିଦ୍ଧ ପରମ ପବିତ୍ର ।୭୦। ପୁଣ୍ୟମାନଙ୍କ ମଧ୍ୟେ ଅଟନ୍ତି ଅଗ୍ରଗଣ୍ୟ । ମଙ୍ଗଳମାନଙ୍କ ମଧ୍ୟେ ସୁମଙ୍ଗଳ ନାମ ॥

ଶ୍ଳୋକଃ

ମତ୍ସମୋ ପାତକୀ ନାସ୍ତି ତତ୍ସମୋ ନାସ୍ତି ପାପହାଃ ।
ଇତିବିଜ୍ଞାୟ ଦେବେଶ ଯଥାଯୋଗ୍ୟଂ ତଥାକୁରୁ ॥
ଅନାଥୋହଂ ଜଗନ୍ନାଥ ନାଥସ୍ତ୍ୱଂମେ ନ ସଂଶୟଃ ।
ଯସ୍ୟନାଥ ଜଗନ୍ନାଥ ସ୍ତସ୍ୟ ଦୁଃଖଂ କଥଂ ପ୍ରଭୋ ॥

ମୋ ସମ ପାତକୀ ନାହିଁ ଆଉ କେଉଁଠାରେ । ତୁମ୍ଭ ସମ ପାପହାରୀ ନାହିଁ କେ ସଂସାରେ ॥ ଏହା ଜାଣି ଆହେ ଅନ୍ତର୍ଯାମୀ ମୋର ଦୋଷ । ଯେଉଁ ଉଚିତ ତାହା କର ଏହି ମୋର ଆଶ ॥ ଅନାଥ ଅଟଇ ମୁହିଁ ଆହେ ଜଗନ୍ନାଥ । ତୁମ୍ଭେ କେବଳ ମୋ ନାଥ ହେବାର ଏ ସତ୍ୟ ॥ ତୁମ୍ଭେ ଯାର ନାଥ ଅଟ ଆହେ କଳ୍ପତରୁ । ଦୁଃଖ ତାର ଆସିବ ହେ ପ୍ରଭୁ କେଉଁଠାରୁ ।୭୨। ମୋର ମନ ପାପଆତ୍ମା ଅପରାଧି ଜନ । କେବେ କେଉଁଠାରେ ନାହିଁ ହେ ପୁରୁଷୋତ୍ତମ ॥ କ୍ଷମା ଅର୍ଥେ ଆପଣଙ୍କ ଆଗେ କହିବାକୁ । ବ୍ୟାଜ ହୁଏ ଯାହା ଇଚ୍ଛା କର ଏ

ସ୍ଥାନକୁ ॥ ଈଶ୍ୱର ଇଚ୍ଛାରେ କର୍ମଅନୁସାରେ ମୂର୍ତ୍ତି । ଯେଉଁ ଯୋନିରେ ଭ୍ରମଣ କରେ ଯନ୍ତ୍ରୀ ତନ୍ତ୍ରି ॥ ଜ୍ଞାନେ ମଙ୍ଗଳ କାର୍ଯ୍ୟ ଯା କରିଛୁ ଅର୍ଜ୍ଜନ । ତାହା ଦ୍ୱାରା ଈଶ୍ୱର କୃଷ୍ଣେ ରହୁ ପ୍ରାଣମନ ॥

ଶ୍ଳୋକଃ

ଈଶ୍ୱର ପରମୋ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ ।
ଅନାଦିରାଦି ଗୋବିନ୍ଦ ସର୍ବକାରଣ କାରଣଂ ॥
ଅକ୍ଷରନ୍ତି ପରଂବ୍ରହ୍ମ ଗୋବିନ୍ଦେତି ଷଡ଼କ୍ଷରଂ ।
ତସ୍ମାଦୁଚ୍ଚରିତଂ ଯେନ ବ୍ରହ୍ମ ଭୂୟାୟ କଳ୍ପତେ ॥

ସଚ୍ଚିଦାନନ୍ଦ ମୂରତି ପରମ ଈଶ୍ୱର । ଆଦି ଅଟନ୍ତି ଶ୍ରୀକୃଷ୍ଣ ସକଳ ଲୋକର ।୮୦। କାରଣ ଅଟନ୍ତି ସର୍ବ କାରଣରେ ସେହି । ସେ ଗୋବିନ୍ଦ ଅନାଦି ତାଙ୍କର ଆଦି ନାହିଁ । ଗୋବିନ୍ଦ ବୋଲଣି ଯେଉଁ ତିନଗୋଟି ବର୍ଣ୍ଣ । ବ୍ରହ୍ମରୂପୀ ପରଂବ୍ରହ୍ମ ଅଟନ୍ତି ସେ ଜାଣ ॥ ଭକ୍ତିଭାବେ ତାହାଙ୍କୁ ଯେ କରେ ଉଚ୍ଚାରଣ । ବ୍ରହ୍ମଲୋକକୁ ନିଶ୍ଚୟେ କରଇ ଗମନ ॥ କିବା ମନ୍ତ୍ର ଜପେ ତାର କିବା ପ୍ରୟୋଜନ । ଭକ୍ତିରେ ଜନାର୍ଦ୍ଦନଙ୍କୁ ଅର୍ପିଛି ଯେ ମନ ।

ଶ୍ଳୋକଃ

ତ୍ୱମେବମାତା ଚ ପିତାତ୍ୱମେବ । ତ୍ୱମେବବନ୍ଧୁ ଚ ସଖାତ୍ୱମେବ ॥
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ । ତ୍ୱମେବ ସର୍ବଂ ମମଦେବଦେବଃ ॥

ତୁମ୍ଭେ ମୋର ପିତା ମାତା ତୁମ୍ଭେ ମୋର ବନ୍ଧୁ । ତୁମ୍ଭେ ମୋ ସଖା ସୋଦର ହେ ଆରତ ବନ୍ଧୁ ।୮୧। ତୁମ୍ଭେ ମୋ ବିଦ୍ୟା ବିଭବ ତୁମ୍ଭେ ମୋର କର୍ତ୍ତା । ତୁମ୍ଭେ ମୋ ସର୍ବସ୍ୱ ପ୍ରଭୁ ଗତି ମୁକ୍ତି ଦାତା ॥ ନବଘନ ସମ କାନ୍ତି ପୀତପଟ ଧର । କଉସ୍ତୁଭ ମଣିକଣ୍ଠେ ଲମ୍ବିତ ଯାହାର ॥ ଶ୍ରୀବତ୍ସ ଚିହ୍ନ ଯା ହୃଦେ ଯା ଆତ୍ମା ପବିତ୍ର । ପ୍ରଫୁଲ୍ଲ ପଦ୍ମ ସମାନ ଯାହାଙ୍କର ନେତ୍ର ॥ ବଲ୍ଲଭ ଅଟନ୍ତି ଯେହୁ ସକଳ ଲୋକର । ସେ ବିଷ୍ଣୁଙ୍କ ପଦେ ସଦା ବନ୍ଦନ ମୋହର ॥

### ଶ୍ଳୋକଃ

ଜୟତି ଜୟତି ଦେବୋ ଦେବକୀ ନନ୍ଦନୋଽୟଂ ।
ଜୟତି ଜୟତି କୃଷ୍ଣୋ ବୃଷ୍ଣି ବଂଶ ପ୍ରଦୀପଃ ॥
ଜୟତି ଜୟତି ମେଘ ଶ୍ୟାମଳଃ କୋମଳାଙ୍ଗଃ ।
ଜୟତି ଜୟତି ପୃଥ୍ୱୀ ଭାରନାଶୋ ମୁକୁନ୍ଦଃ ॥

ଜୟ ଜୟ ଦେବଦେବ ଦେବକୀ ନନ୍ଦନ । ଜୟ ଜୟ କୃଷ୍ଣ
ବୃଷ୍ଣି ବଂଶ ପ୍ରଦୀପନ ।୯୦। ଜୟ ଜୟ ନବଘନ ଶ୍ୟାମଳ ବରନ ।
ନବନୀତରୁ କୋମଳ ଅଟେ ଅଙ୍ଗଘନ ॥ ଜୟ ଜୟ ମହୀଭାର ନିବାରଣ
କାରୀ । ଜୟ ମୁକୁନ୍ଦ ମୁରାରୀ ମୋହନ ମାଧୁରୀ ॥ ଖେଳ କରୁଛ ସକଳ
ଘଟ ପଞ୍ଜରରେ । ପ୍ରେମ ନେତ୍ରରେ ରହିଛ ଖଗ ଆସନରେ ॥
ଖୋଜିଲେ ଆଗରେ ଛନ୍ତି ଲାବଣ୍ୟ ମୂରତି । ଖସିପଡନ୍ତି ଭାବରେ
ଅପରୂପ କାନ୍ତି ॥ ହଂସଂ ମଧ୍ୟରେ ଅଣ୍ଡିବ ଅର୍ଯ୍ୟମାଙ୍କ ଛକ । ତ୍ରିଭଙ୍ଗୀ
ହୋଇ ଖେଳନ୍ତି ଉକତ ପାଳକ ।୯୫। ଖଟ ମନ ସେହି ପାଦେ
ହଜାଇଣ ମତି । ହୋଇବୁ ଭବୁ ଉଦ୍ଧାର ତେଜ ଖଳ ରୀତି ॥ ବିଜେ
ହୋଇ ଅଛନ୍ତି ଖ ମଧ୍ୟେ ସୂର୍ଯ୍ୟ ପ୍ରାୟେ । ଷଡଚକ୍ର ପରେ ତ୍ରିବେଣୀର
ହୃଦ ଠାଏଁ ॥ ଖେଳୁଛନ୍ତି ଆଗରେ ତୋ ଲାବଣ୍ୟ କଳେବର । ଖସିବା
ସ୍ଥାନେଣ ରହ ହେଜ ଶିଶୁଧର ॥ ଖମ୍ବକୁ ଦେଲେ ଅନାଇ ଖମ୍ବ
ଜ୍ୟୋତି ପୁଞ୍ଜି । ଖମ୍ବରେ ଦେଖାଇ ଦେଲ ପ୍ରହ୍ଲାଦ ଦମ୍ଭେ ॥ ଖମ୍ବ
ଫାଟିଣ ହିରଣ୍ୟ ସମ୍ମୁଖେ ବିରଜେ । ଖରେ ବିଦାରିଣ ହିରଣ୍ୟକୁ
ଦେବରାଜେ ।୧୦୦। ଖରେ ଅନ୍ତର୍ଦ୍ଧାନ ହେଲେ ମହିମା ଦେଖାଇ ।
ହରଷେ ଘଟରେ ଖୋଜ ଆତ୍ମାରୂପ ଧ୍ୟାୟି ॥ ସ୍ତ୍ରୀନମାନେ ନ ଛାଡନ୍ତି
ଖିଆଲ ପରାଏ । ରଜ ତମରେ ମନକୁ ଦେଇ ଭୂତ ପ୍ରାୟେ ॥
ଖୋଜିଣ ଆୟୁକୁ ଯମଦୂତେ ନେଉଛନ୍ତି । ହେଳାରେ ଭେଳା ବୁଡ଼ିବ
ଖୋଜ ଶିରୀପତି ॥ ହେତୁରେ ହେତୁକୁ ଦେଇ ଶୀଘ୍ର ଛନ୍ଦିଧର ।

ଖଣ୍ଡନ ହେବ ତୋ ଦୁଃଖ ତରବୁ ସଂସାର ॥ ହଂସ ସ୍ୱରୂପରେ ଶିଶୁମୂନା ଠାରେ ଛନ୍ତି । ଖଟିଲେ ଉଦ୍ଧାର ହେବୁ ଅଚ୍ୟୁତ ସମ୍ପତ୍ତି । ୧୦୫ । ଖର୍ବ ବର୍ଷା ହବା ନଶି ତହିଁ କଛୁ ନାହିଁ । ହୋଇଛୁ ସେହ୍ନ ଠାବରେ ସୁଶୀତଳ ଗ୍ରୁର ॥ ଯ୍ଲୁଁ ଇଁ ଶ୍ରୀଁ ଇଁ କ୍ଲୀଁ ଇଁ ହିମୂର୍ତ୍ତିଙ୍କୁ ଖୋଜ ଯାଇ । ଖମଣି ମଣ୍ଡଳେ ଛନ୍ତି ଅଣରୂପ ହୋଇ ॥ ହରେ ସମ କୃଷ୍ଣ ଖେଳ ଭକତେ ଜାଣନ୍ତି । ସଖା ଯେଣ ବୃନ୍ଦାବନେ ଖେଳେ ମାତିଛନ୍ତି ॥ ସମାନ ସ୍ୱରୂପ ତାଙ୍କ ଜଗତ ଜନରେ । ଅଖିତ ଗୁଣ ଜ୍ଞାନ ଭକତଙ୍କ ହ୍ୱିତରେ ॥ ସାନ ବଡ ତାହାଙ୍କର ଭାବନା ନ ଥାଇ । ଗୁଣରେ ଜଗତ ସର୍ବ ଅଛଇ ଛନ୍ଦାଇ । ୧୧୦ । ସୁଜ୍ଞାନ ଚକ୍ଷୁରେ ଦେଖି ହଅନ୍ତି ଭକ୍ତଙ୍କୁ । ସମଦରଶୀ ହୋଇଲେ ପାଇବ ତାହାଙ୍କୁ ॥ ଗୋ'ଲ୍ଲ ହାଟର ଶିଖେଣ ଶ୍ରୀହାଟପାଟଣା । ସେହ୍ନ ହାଟେ ବାରବାର ଗ୍ଲୁଡ଼ିବ ବାସନା ॥ ଗୁପତ ଶିଶୁମୂନାରେ ସସ୍ର ଦଳ ଭେଦ । ଅନନ୍ତ ଶଯ୍ୟାରେ ପୂର୍ଣ୍ଣ ଗୋଲକ ବାଶଧି ॥ ଗୋପାଙ୍ଗନା ଚତୁଃପାର୍ଶ୍ୱେ ବିଜେ କରିଛନ୍ତି । ଗୁଣିଗଣ ଗଣ୍ଡିଧନ ସବୁରି ଅଟନ୍ତି ॥ ପଦ୍ମ ମକରନ୍ଦ ଝରୁଅଛୁ ନିରନ୍ତର । ସୁଗନ୍ଧ ଶୀତଳ ସ୍ୱାଦୁ ଅତି ମନୋହର ।୧୧୫। ଶିଖଣ୍ଡ ଶିଖରୁ ସଳଖେ ଭେଦ ଆସୁଛୁ । ପଞ୍ଚାନନଙ୍କ ଶିରରେ ସଧୀରେ ପଡ଼ୁଛୁ ॥ ଆମ୍ଭା ନଦୀ ତୀରରେ ତୁ କରସି ସ୍ନାହାନ । ସକଳ ପାପ ଚଳିବ ଆରେ ବାଇମନ ॥ ଯମଗଣ କେବେ ତୋତେ ନ ପାରିବେ ଛୁଇଁ । ଗୋବିନ୍ଦ ପାଦ ପଦ୍ମରେ ଚିତ୍ତ ରଖ ତୁହ୍ୱ ॥ ସମ୍ପୂର୍ଣ୍ଣାନନ୍ଦରେ ନେଇ ରଖାଇଲେ ମନ । ଗୁଣରେ ନାହାନ୍ତି ହରି ଛୁହନ୍ତି ବନ୍ଧନ ॥ ଶରୀର ଥାଉଣୁ ପୂତା ଏକ ନାମ ଘୋଷ । ହେଉଛୁ ଗତ ବୟସ ମାୟାର ଲାଳସ । ୧୨୦ । ସାକ୍ଷାତେ ଗୁରୁ ଶ୍ରୀକୃଷ୍ଣ ସକଳ ଘଟେଣ । ବିହରନ୍ତି ଗୁପତେଣ ନ ଜାଣନ୍ତି ଜନ ॥ ଗୁପତରେ ନୀଳଗିରି ଶିଖେ ବିଜେ କରି । ସହନ୍ତି ଅଳ ସକଳ ଅଚଳ ବିହାରୀ ॥

ସ୍ୱରୂପେ ଅରୂପେ ତାଙ୍କ ବିହାର ଅଟଇ । ତେଣୁ ଲାଗି ଆସନ୍ତି ପ୍ରଭୁ ଭକ୍ତ ଭାବଗ୍ରାହୀ ॥ ଗୋପାଳ ପୁଅଙ୍କ ମେଳ ସବୁ ସମୟରେ । ରାଧା କୁଣ୍ଡ ଶ୍ୟାମକୁଣ୍ଡ ମଧ୍ୟ ରାହାସରେ ॥ ଗୋପୀକା ମଣ୍ଡଳ ମଧ୍ୟେ ଶ୍ରୀନନ୍ଦ ନନ୍ଦନ । ଗୋରୁବତ୍ସ ସହିତରେ ଶ୍ରୀ ବୃନ୍ଦାବନେଣ ।୧୨୫। ଗୋପ ବାଳକ ସଙ୍ଗରେ ସବୁ ସମୟରେ । ସୁମଧୁର ବାଣୀ ବାଞ୍ଛାକଳ୍ପ ସନ୍ନିଧିରେ ॥ ଉଦୟ ବଟରେ ଯାଇ ବିହାର କରନ୍ତି । ସଚ୍ଚିଦାନନ୍ଦ ବିଗ୍ରହ ଅଭିନବ ମୂର୍ତ୍ତି ॥ ଅନନ୍ତ ଶ୍ରୀକୃଷ୍ଣ ନାମ ଅନାଦି ଗୋଚର । ଅନାଶ୍ରିତ ଅଧୀନକୁ କର ପରସ୍ପର ॥ କାୟ ମନ ବାକ୍ୟ ବୁଦ୍ଧି ଧରି ନ ପାରଇ । ଶ୍ରୀରାଧା ମାଧବ ସେବା କାହିଁ ପାଇବଇଁ ॥ ବିଷମ ସଙ୍କଟ ଆସି ପଡ଼ିଛି ହେ ଦେବ । ଅଜ୍ଞାନ ବିଲୋପ କର ହେ ରାଧା ମାଧବ । ୧୩୦ । ଜୀବର ବୁଦ୍ଧି ନଜର ସ୍ୱଳ୍ପ ପରିମାଣ । ଈଶ୍ୱରଙ୍କ ଶକ୍ତି ଅଟେ ଅଖଣ୍ଡ ମହାନ ॥ କି ପ୍ରକାର ଜୀବ ଭ୍ରଂଶ ପାଇବ ଉଦ୍ଧାର । କୂଟ କପଟ ତେଜିଣ ତବ ଦାସ କର ॥ ଏକ ମାତ୍ର ଧର୍ମ ଅଟେ ଜଗତର ସାର । ତହିଁରେ ଆଶ୍ରୟ ଦେଇ ଛେଦ ଅନ୍ଧକାର ॥ କି ଉପାୟେ ଜୀବ ଆତ୍ମା ହୋଇବ ଉନ୍ନତ । କୃଷ୍ଣ ପାଦ ପଦ୍ମ ସେବା ଭୁଞ୍ଜିବ ସତତ ॥ ଆଉ କିସ ମାଗିବାକୁ ମୁଖେ ନ ସ୍ଫୁରଇ । ଗୋପାଙ୍ଗନା ଠାରୁ ଦୃଷ୍ଟି ଫେରନ୍ତୁ ହେ ସାଇଁ ॥ ଅନାଥିଆ ହୋଇଅଛୁ ଜଗତ ଯାକରେ । ନାଥିଆ ହୋଇ ବୁଲୁଛ ତିନ ଭୁବନରେ ॥ ପତିତପାବନ ବାନା ଉଡୁଛି ଗୋସାଇଁ । ପତିତେ ନିରଖି କଲେ ଭେଳା ବୁଡ଼ିବଇ ॥ ବୁଡାଇବା ଇଚ୍ଛା ଯଦି ଅଛି କୃପାସିନ୍ଧୁ । ବୁଡ଼ିଲେ ଶୋଚନା ନାହିଁ ବ୍ରଜାଙ୍ଗନା ବନ୍ଧୁ ॥ ଜଗତେ କହିବେ ଭକ୍ତବାରୁ ଏହି ଦଶା । ଏ ନିନ୍ଦା ଅର୍ଜିବ ସିନା ପାଇବ ପ୍ରଶଂସା ॥ ଜଗତେ ଯାହା କହନ୍ତୁ ନାହିଁ ମୋ ଶୋଚନା । ସମର୍ପଣ କରିଅଛୁ ଜୀବର ବେଦନା । ୧୪୦ । ଦେଇଥିଲେ

ପାଇଥାନ୍ତି ମନ ଛାଡ଼ି ସିନା । ଦେଇନାହାଁ କାହୁଁ ପାଇବଇଁ ନନ୍ଦକାହ୍ନା । ସତ୍ ଗତ୍ ଏହି ଘଟ ଭକ୍ତମାନେ ରହୁ । ଏତିକି ମାଗୁଛି ପ୍ରଭୁ ଅନୁଗ୍ରହ ହେଉ ॥ ଯାହା ତାହା କର ପ୍ରଭୁ ନାହିଁ ମୋ ଶୋଚନା । ଶ୍ରୀରାଧା ମାଧବ ସେବା ଜୀବ ଯାଉ ଜନା ॥ ହେ କୃଷ୍ଣ କେଶବ ଚଳ ଶୀଘ୍ର ପେଶ କନା । ଚଳ ବଳ ନ କରନ୍ତୁ ବାଉଳି ଘବନା ॥ ଏକଶତ ପଞ୍ଚାଳିଶ ପଦେ ହେଲି ଶେଷ । ବାଉଳି ଶ୍ୟାମସୁନ୍ଦର ଭକ୍ତ ଚିତବାସ । ୧୪୫ ।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ଶ୍ରୀକୃଷ୍ଣ ପଦାରବିନ୍ଦ ଭକ୍ତି ବର୍ଣ୍ଣନେ ନାମ ଏକାଦଶୋଽଧ୍ୟାୟଃ ॥

—*—

## ଦ୍ୱାଦଶ ଅଧ୍ୟାୟ

ନମୋଃ କେଶି କଂସାସ୍ତି ହେ ପାବନ ବିହାସ୍ତି । ନମୋଃ ଅଖିଳ ପାବନ ସ୍ୱଶୁର ଅଇସ୍ତି ॥ କେଶି କଂସ ବନାଶାର୍ଥେ ଖେଳି ଭିଆଇଲ । ବୃନ୍ଦାବନେ ମାୟା ଲୀଳା ପ୍ରକାଶ କରିଲ ॥ କହ ପ୍ରଭୁ ଈଶ୍ୱରଙ୍କୁ କି ଘବେ ଭଜିବ । ସ୍ତ୍ରିୟ ଅବା ପୁରୁଷର ଘବରେ ଦେଖିବ ॥ ବିନୟେ ବାଉଳି ମନ ଯୋଡ଼ି ବେନିକର । ଶରଣ ପଶଇ ପ୍ରଭୁ କର ହେ ପ୍ରତ୍ୱର ॥ କେତେମତେ କେତେ ଲୋକ ଈଶ୍ୱରଙ୍କୁ ଘବେ । ସ୍ଥାପି ନିଜ ନିଜ ମତେ ବୁଦ୍ଧିର ପ୍ରଘବେ । ୫ । ବୁଦ୍ଧିହୀନ ଜନ ମୁଁ ବୁଝିବା ଅଶକତ । କେଉଁମତେ ଶ୍ରେଷ୍ଠ ହୋଇ ବିଶ୍ୱାସିବେ ଭକ୍ତ ॥ ସର୍ବ ସମ୍ମତ ଘବରେ ସମସ୍ତେ ବୁଝିବେ । ଜଗତ ଭ୍ରାନ୍ତି ତୁଟାଇ ଜ୍ଞାନାଞ୍ଜନ ନେବେ ॥ ଜଗତ ଯାକରୁ ହୀନମାନ ଅଟେ ମୁହିଁ । ଜଗତ ନାଥ ପତାକା ହଉଛି ଚୋ,ସାଇଁ ॥ ପତିତ ପାବନ ତୁମ୍ଭ ଛଡ଼ା କେହି ନାହିଁ । ବାଉଳି ପତିତ ହୋଇ ସଡ଼ୁଛି ଗୋସାଇଁ ॥ ପବିସକାସ୍ତି ପଦାବ୍ଜେ ପଶୁଛି ଶରଣ୍ୟ ରଖ ନ ରଖ ଗୋବିନ୍ଦ ଜୀବର ଜୀବନ । ୧୦ ।

ନାମ ରୂପଂ ଦ୍ୱୟୋରେକଂ ଭ୍ରୂବ ମଧ୍ୟେ ପ୍ରକାଶିତଂ ।
ତସ୍ୟ ରୂପଂ ତଡ଼ିତ୍‌କାନ୍ତ ପ୍ରକାଶଂ ମାଳକନ୍ଦରେ ॥

ହ୍ଣଂ ହରେ ଶବ୍ଦ ଚୈବ ରାମ ନାମ ଗୁରୁମଣିଃ ।
କୃଷ୍ଣସ୍ୟ ନର୍ଗୁଣଂ ବ୍ରହ୍ମ ରାଧାମ କୃଷ୍ଣାଗତଃ ॥

ସପ୍ତ ପଞ୍ଚାମ୍ନିକ ଜ୍ଞାନଂ କଳୌ କଳ୍ମଷ ନାଶନଂ ।
ହୃଦ ମଧ୍ୟେ ପ୍ରବେଶନ୍ତେ ଜ୍ଞାନ ଅଗ୍ନି ପ୍ରକାଶୟେତ୍ ॥

ତାମ କ୍ଷରନ୍ତ ନାସାଗ୍ରେ ରୂପ ଲୋଚନ ଗୋଚରେ ।
ଯସ୍ୟ ରୂପଂ ପ୍ରଧାନସ୍ୟ ପ୍ରକାଶଂ ମାଳକନ୍ଦରେ ॥

ତେଜରୂପସ୍ତ୍ରଂ ମନଃ କୃଷ୍ଣ କୃଷ୍ଣ ବନ୍ଦୂଃ ପ୍ରକାଶିତଃ ।
ଯୋଗବନ୍ଦୂ ଯୋଽପିତ୍ୱଗବାନଂ ଅବଦ୍ୟାହଂ ଅଖଣ୍ଡିତା ॥

ସହଜଂ ମନ ସୂର୍ଯ୍ୟଂ ଚ ବିପୁର ଅଙ୍ଗ କେବଳଂ ॥
ଚତୁଃଷଷ୍ଟୀ କଳାଯୁକ୍ତଂ ନତ୍ୟସିଦ୍ଧଂ ମନୋବଳଂ ॥

ଚୈତନ୍ୟ ଉବାଚ

କହୁଁତେ ହସିଣ ପ୍ରଭୁ କହିଲେ ତକ୍ଷଣ । ଧନ୍ୟ ତୁ ବାଉଳ ମନ ଶ୍ରେଷ୍ଠ ମହାଜନ ॥ ତୋହରେ ଅଦେୟ ମୋର କିବା ଅଛି ବୋଲ । କିଅ ଯାହା ଦେବ ମୁହିଁ ହୋଇଣ ସରଳ ॥ ସରଳେ ସରଳ ଭାବେ ଈଶ୍ୱରଙ୍କୁ ପାଏ । କୁତର୍କୀ ନ ଜାଣେ କେବେ ପ୍ରାପ୍ତିର ଉପାୟେ । ଯେ ରୂପେ ଭାବନା ଯାର ପ୍ରାପ୍ତି ସେହି ରୂପ । ଏହି ମାତ୍ର ଏଥିରେ ସିଦ୍ଧାନ୍ତ ଅପରୂପ । କେହି ଶାନ୍ତ ଦାସ୍ୟ ଭାବେ ଭାବଇ ଈଶ୍ୱରେ । କେ ଅବା ବାତ୍ସଲ୍ୟ ଭାବେ ଉପାସନା କରେ ॥ କେବା ସଖା ଭାବେ ତାଙ୍କୁ କରେ ଆରାଧନା । କେହି ପତି ଭାବେ ପୂର୍ଣ୍ଣ କରଇ କାମନା ॥ ଈଶ୍ୱରଙ୍କ ସ୍ୱରୂପରେ ଅନ୍ତ ହୁଏ ନାହିଁ । ବୁଝିବା ଅଶକ୍ତ ସଦା ଆପଣା ଈଶ୍ୱର ॥ ହୁଏ ନାହିଁ ଶକ୍ତ କେବେ

ଜ୍ଞାନ ପରମୀତ । ଯାହା ନୁହେଁ ପରମେୟ ତାହା ପରମୀତ ॥ ତଥାପି ଯେ ଜନ ଇଚ୍ଛେ ତତ୍ତ୍ୱ ପରମାଣ । ତାହାର ହୁଏଟି ମାତ୍ର ବୋଧ ଅନ୍ତ ଜ୍ଞାନ । ଅନ୍ତ ଜ୍ଞାନ ବୋଧେ ତାର ବୁଦ୍ଧି ହୁଏ ମନ୍ଦ । ନିର୍ବୋଧ ଅଧମ ସେହି ଜଗତେ ସେ ଅନ୍ଧ ॥ ବୁଦ୍ଧିମନ୍ତ ଶ୍ରୁତିକର୍ତ୍ତା ସେ କାରଣେ କହେ । ଈଶ୍ୱରେ ଜାଣିବେ ମାତ୍ର ସେହି ମହାଶୟେ ॥ ଯେ କହେ ତତ୍ତ୍ୱର ମୁହିଁ କିଛି ନ ଜାଣଇ । କହୁ ମୁହିଁ ଈଶ୍ୱରରେ ଜ୍ଞାନ ଜ୍ଞମା ହୋଇ ॥ ଅସ୍ଥିର ସିଦ୍ଧାନ୍ତ ହୁଏ ଈଶ୍ୱରରେ ଜ୍ଞାନ । ତହୁଁ ସେ ଉପଜେ ଭ୍ରମ ଶୁଣ ବୁଦ୍ଧିମାନ ॥ ସେ ଭ୍ରମ ଅସାଧ୍ୟ ହୁଏ ନରର ହୃଦୟରେ । ତେଜ୍ୟା କର ଯତ୍ନେ ତାହା ସତ୍ୟ ବ୍ୟବହାରେ ॥ ଅତଏବ ସାର ଜାଣ ଭକ୍ତିର ପ୍ରଧାନ । ନର ବୁଦ୍ଧି ପାଇ ନାହିଁ ଈଶ୍ୱର ସନ୍ଧାନ । ୨୫ । ମାର୍ଜିତ ବିଶ୍ୱାସେ ତାହା ଆଶ୍ରୟ କରଣ । ଈଶ୍ୱରଙ୍କ ଶୁଦ୍ଧ ଭାବ ପାଏ ଭକ୍ତଗଣ । ଈଶ୍ୱରେ ମାନବେ ସ୍ଥିତ ମାନବ ଈଶ୍ୱରେ । ଏହି ଭାବେ ଶୁଦ୍ଧି ଜାଣ ଆତ୍ମର ଅନ୍ତରେ ॥ ବୁଦ୍ଧି ମାତ୍ର ଏ ଭାବରେ ହିଏନା ଆଶ୍ରୟ । ପ୍ରତ୍ୟୟର କାର୍ଯ୍ୟ ଏହା ଜାଣ ମନରାୟ ॥ ତେବେ କି ବିଶ୍ୱର ଆଉ ବିଶ୍ୱାସର ବଳେ । ଦୃଢ଼ ହୁଏ ସଦାକାଳେ ମନୁଷ୍ୟର ମନେ ॥ ଏମନ୍ତ ବାଞ୍ଛା କେବେ ନ କର ମନରାଏ । ହୃଦୟରେ ବିଶ୍ୱାସେ ସଦା ଭ୍ରାତୃଭାବ ଥାଏ ॥ ବିଶ୍ୱର ବିଶ୍ୱାସ ଦୁଇ ବିଭିନ୍ନ ରତନ । ଉଭୟ ଉଭୟେ କରେ ସାହାଯ୍ୟ ପ୍ରଦାନ ॥ ଏକରେ ଆଦର ପୁଣି ଅନ୍ୟେ ଅନାଦର । ଯେ କରେ ନିର୍ବୋଧ ସେହି ଅଧର୍ମୀ ପାମର ॥ ମନ ରାଜ୍ୟେ ଉଭୟରେ ନିର୍ଦ୍ଦିଷ୍ଟ ବିଭାଗ । ତେଣୁ ପରସ୍ପରେ ଥାଏ ହୃଦେ ଅନୁରାଗ ॥ ନିର୍ବୋଧ ବିଶ୍ୱାସ ପ୍ରତି ନ କର ବିଶ୍ୱାସ । ଯୁକ୍ତି ବହିର୍ଗତ ଯେତେ ସଦା ତାଏ ତ୍ରାସ ॥ ଯୁକ୍ତି ସିଦ୍ଧ ବିଶ୍ୱାସ ଯେ ଅମୂଲ୍ୟ ରତନ । ଯତ୍ନେ ଜଗି ଧର ହୃଦେ ଭକ୍ତ ମହାଜନ । ୩୬ । ସେ ହିତ ବିଶ୍ୱାସ ସଦା

ଶିଖାଏ ଆମ୍ଭଙ୍କୁ । ଆମ୍ଭେ ଈଶ୍ୱରଙ୍କ ପୁଣି ଈଶ୍ୱର ଆମ୍ଭଙ୍କୁ ॥ ଶାନ୍ତ ସଖ୍ୟ ବାତ୍ସଲ୍ୟ ବା ପ୍ରେମର ସାଧନ । ସର୍ବମତେ ଏ ସମ୍ବନ୍ଧ କରେ ନିରୂପଣ ॥ ଏ ସମ୍ବନ୍ଧ ଯାର ହୃଦେ ଅପ୍ରକାଶ ରହେ । ତାହାର ସାଧନା କାର୍ଯ୍ୟ ସମ୍ପନ୍ନ ନ ହୁଏ ॥ ଆକାର ବିଶିଷ୍ଟ ଦ୍ରବ୍ୟ ସାକାର ଆଖ୍ୟାନ । ତତ୍ତ୍ୱ ଜ୍ଞାନୀ ଲୋକେ ସଦା କରନ୍ତି ପ୍ରଦାନ । ଆକାର ତାହାଙ୍କୁ ବୋଲି ଶୁଣ ମହାଶୟ । ଦର୍ଶନ ଇନ୍ଦ୍ରିୟେ ଯାହା ହୁଏ ଗ୍ରହଣୀୟ । ୪୦ । ମନୁଷ୍ୟ ପ୍ରକୃତି ହୁଏ ଦ୍ୱିଭାଗେ ବିଭକ୍ତ । ଦେହ ଆଉ ମନ ପୁଣି ଦୁଇ ଜାଣ ଭକ୍ତ ॥ ଦେହର ଇନ୍ଦ୍ରିୟ ସବୁ ପ୍ରତ୍ୟକ୍ଷ ଦର୍ଶନ । ଅତଏବ ସେ ସକଳ ଜାଣେ ମୂର୍ଖଗଣ ॥ ମନର ଯେ ରୂପ ଅଛି ଇନ୍ଦ୍ରିୟ ନିଚୟ । ଯଦ୍ୱାରା ମନର କାର୍ଯ୍ୟ ହୁଏଟି ନିର୍ଣ୍ଣୟ ॥ ଚକ୍ଷୁ କର୍ଣ୍ଣ ନାସିକାଦି ସ୍ୱତ ଅପତୁଲ୍ୟ । ଯ ଦ୍ୱାର ମାନସ ଦେଖେ ସୂକ୍ଷ୍ମ ପୁଣି ସ୍ଥୂଳ ॥ ଦେହରେ ପ୍ରମାଣ ଯଥା ପ୍ରତ୍ୟକ୍ଷାନୁମାନ । ମନ ମଧ୍ୟେ ତଥା ତାହା ସଦା ବିଦ୍ୟମାନ । ୪୫ । ମନର ପ୍ରତ୍ୟକ୍ଷ ହୁଏ ଆତ୍ମାର ପ୍ରତ୍ୟୟ । ବିଶ୍ୱାସର ରାଜ୍ୟ ଏହା ଶୁଣ ମନଶୟ ॥ ଦେହ ମଧ୍ୟ ଜ୍ଞାନ ଯେତେ ପାଏ ନରମନ । ସେ ସକଳ ଅନୁମାନ ମନର ଲକ୍ଷଣ ॥ ଆତ୍ମାର ପ୍ରତ୍ୟୟ ମାତ୍ର ପ୍ରତ୍ୟକ୍ଷ ପ୍ରମାଣ । ତର୍କିଲେ ପଣ୍ଡିତ ଲୋକ ହୁଏ ଯତ୍ନବାନ ॥ ପ୍ରକୃତି ପୂର୍ବରୁ ଏକା ଚିନ୍ମାତ୍ର ସଂସ୍ଥିତ । ପ୍ରାକୃତିକ ଦେହ ତାର ନୁହେଁ ସମ୍ଭାବିତ ॥ ମାନସ ନୟନ ତାକୁ ଚିରକାଳ ପାଏ । ନୟନର ଗ୍ରାହ୍ୟ ବୋଲି ସାକାର ବୋଲାଏ ।୫୦। ପ୍ରାକୃତିକ ଚକ୍ଷୁ ତାକୁ ଦେଖି ନ ପାରଇ । ନିର୍ଗୁଣ ଭକ୍ତ ସାକାର ନିରାକାର କହି । ନିରାକାର ସାକାର ଏ ଫଳ ନୁହେଁ ଭିନ୍ନ । କୁତର୍କ ପାଷାଣ୍ଡଗଣେ କରୁଥାନ୍ତି ଆନ ॥ ଶ୍ରୁତିମତେ ବିଭୁ ଅଟେ ସ୍ୱତନ୍ତ୍ର ଅନନ୍ତ । ନିତ୍ୟଜ୍ଞାନ ସର୍ବବ୍ୟାପି ସକଳ ନିୟନ୍ତ । ସର୍ବଜ୍ଞତା ସର୍ବାଶ୍ରୟ ସର୍ବଶକ୍ତିମାନ । ଅବୟବ ହୀନ ଶିବ ସମ୍ପୂର୍ଣ୍ଣ

ମହାନ ॥ ଏହି ଭାବ ଭାବେ ଯେହୁ ପରମ ଈଶ୍ୱରେ । ଜ୍ଞାନ ତାର ଶୁଦ୍ଧ ବୋଲି ବୋଲେ ବଙ୍କ ନରେ । ୫୫ । ଅହ୍ଲାଦନୀ ଭାବ ବୋଲି ରାଧା ଠାକୁରାଣୀ । ଅତଏବ ରାଧା କୃଷ୍ଣ ସାର ବୋଲି ଜାଣି ॥ ଏହି ଭାବ ଭାବନାରେ ଯେଉଁ ମହାଜନ । ରାଧା କୃଷ୍ଣ ଦୁଇ ନାମ କରେ ଉଚ୍ଚାରଣ ॥ ତାହାର ଭକ୍ତିର ସିଦ୍ଧି ହୋଇବ ପ୍ରବଳ । ସେ ଭକ୍ତ କଦାପି ପାଏ ନାହିଁ ମନ୍ଦଫଳ ॥ ନିତ୍ୟ ଜ୍ଞାନ ଆନନ୍ଦର ସଞ୍ଜୋଗ ଘଟନେ । ପୂର୍ଣ୍ଣାନନ୍ଦ ମହାଭାବ ହୁଏ ସର୍ବକ୍ଷଣେ ॥ ବ୍ରହ୍ମାନନ୍ଦ ଉଚ୍ଛୁଳନ୍ତେ ସଦା ଚେଷ୍ଟା ପାଏ । ପୂର୍ଣ୍ଣାନନ୍ଦ ଆସ୍ୱାଦନେ ବାଞ୍ଛାକର ପ୍ରାପ୍ୟେ । ୬୦ । ସ୍ପର୍ଶ ଯେହୁ କରି ତେବେ ସ୍ପରଶୀ ସେ ପାରି । ଏ ଭାବ ଅପେକ୍ଷା ନାହିଁ ବଦ୍ଧେ ପ୍ରେମବାରି ॥ ପୂର୍ଣ୍ଣାନନ୍ଦ ରୂପୀ ସେହି ଅହ୍ଲାଦନୀ ଶୂଣ । ଯାହାକୁ ଜନନୀ ଆଖ୍ୟା ଦେଇ ପୁନଃପୁନ ॥ ସକଳ ସ୍ୱଭାବେ ସେହି ପୂର୍ଣ୍ଣାନନ୍ଦ ଭାବେ । ନିତ୍ୟ ଜ୍ଞାନେ ଲୀନ ନିଜ ଆନନ୍ଦ ପ୍ରଭାବେ ॥ ସ୍ୱଜାତିର ପ୍ରତି ହୁଏ ସ୍ୱଜାତିର ଟାଣ । ତେଣୁ ଆହ୍ଲାଦନୀ ବ୍ରହ୍ମାନନ୍ଦକୁ ନେଇଣ ॥ ଅଶ୍ଳୀଳ ଭାବରେ ମାତ୍ର ଦୁଷ୍ଟ ଲୋକ ଜାଣେ । ବୈଷ୍ଣବତା ନଷ୍ଟ କରେ ବିବିଧ ବିଧାନେ । ୬୫ । ବୈଷ୍ଣବ ଲକ୍ଷଣ ଅଟେ ନିରାଶାହିଁ ଦେଖ । ଆପରେ ଜଡ଼ିତ ହେଲେ ସର୍ବ ନଷ୍ଟ ହୋଇ ॥

ଶ୍ଳୋକଃ

ଦେବ ଦ୍ୱିଜ ଗୁରୁପ୍ରାଜ୍ଞ ପୂଜନଂ ଶୌଚ ମାର୍ଜ୍ଜନଂ ।
ବ୍ରହ୍ମଚର୍ଯ୍ୟ ଅହିଂସା ଚ ଇତି ସନ୍ୟାସ ଲକ୍ଷଣଂ ॥

ବୈଷ୍ଣବ ନ କରେ କେବେ ଫଳର କାମନା । ମୂର୍ଖ ଲୋକ କରେ ସଦା ଫଳର ସାଧନା ॥ ଶ୍ରୀକୃଷ୍ଣ ଜାଣନ୍ତି ତାଙ୍କ ଉଦେଦ୍ଧ୍ୟ ଫଳ । ଫଳ ପାଇଁ କଦାପିହିଁ ନୋହିବ ବିକଳ ॥ ବୈଷ୍ଣବର ଭକ୍ତି ସାର ମୁକ୍ତି ତାର ଦାସୀ । ଯଥାର୍ଥ ବୈଷ୍ଣବ

ନୁହେଁ ମୁକ୍ତିର ପ୍ରୟାସୀ ॥ କି ଘୃଣର ପଦାର୍ଥ ମୁକ୍ତି ଭକ୍ତିର ନିକଟେ । ଭକ୍ତି ହେଲେ ମୁକ୍ତି ହୁଏ ସକଳ ସଙ୍କଟେ ॥ ସାଧନା କେବଳ ସେହି କୃଷ୍ଣ ଆସ୍ୱାଦନ । ଉଦ୍ଦୀପକ ବୃନ୍ଦାବନ ଏଥି ପାଇଁ ଧାମ ॥ ରୂପର କଳ୍ପନା ଏବେ କାର୍ଯ୍ୟକାରୀ ହୁଏ ॥ ବୃନ୍ଦାବନ ଧାମେ ଭକ୍ତ ଭକ୍ତିମୟ ହୁଏ ॥ ଆତ୍ମାରୂପୀ ଗୋଲୋକରେ କୃଷ୍ଣ ବିରାଜନ୍ତି । ନିତ୍ୟ ଜ୍ଞାନ ଆହ୍ଲାଦିନୀ ଏ ଦୁଇ ସାଙ୍ଗନ୍ତି । ଆସ୍ୱାଦନ ହୋଇ ସ୍ନିଗ୍ଧ କରଇ ଅନ୍ତର । ନିତ୍ୟ ହେନ୍ତି ରାଧା କୃଷ୍ଣ ଜାଣ ନିରନ୍ତର ॥ ଜଡ଼ ଜଗତର ତୁଲ୍ୟ ତାର ବୃନ୍ଦାବନ । ଆସ୍ୱାଦନ ତୁଲ୍ୟ କୃଷ୍ଣେ ଦେଖେ ସାଧୁଜନ । ୭୫ । ଆହ୍ଲାଦିନୀ ଶକ୍ତି ଅଟେ ସେହି ରାଧାରୂପ । ବ୍ରହ୍ମାନନ୍ଦେ ଗୋପୀସଙ୍ଗ ତୁଲ୍ୟ ଅପରୂପ ॥ ଏ କାରଣେ ଭକ୍ତଗଣେ ଯାଇ ବୃନ୍ଦାବନେ । ଭାବନା କରନ୍ତି ମନେ ବ୍ରଜେନ୍ଦ୍ର ନନ୍ଦନେ ॥ କିନ୍ତୁ ଦେଖ ପ୍ରତିମୂର୍ତ୍ତି ମଧ୍ୟେ ଅଛି ସାର । ନରର ଉଚିତ ବୋଲି କରେ ନମସ୍କାର ॥ ପ୍ରତିମୂର୍ତ୍ତି ସ୍ଥାପନାର ଧର୍ମ ଅର୍ଥ ଜାଣ । ଭକ୍ତି ପାଇଁ ସଦା ଭକ୍ତ କରୁଛନ୍ତି ବିଧାନ ॥ ଏପରି ବିଷୟେ ଘୃଣା କରେ ନାହିଁ ଜ୍ଞାନୀ । ଘୃଣିଲେ ନିନ୍ଦକ ହୁଏ ତାର ଧର୍ମ ହାନି । ୮୦ । ଈଶ୍ୱରଙ୍କ ପ୍ରତି ଭକ୍ତି ନାହିଁ ଯାହାଙ୍କର । ପ୍ରତିମୂର୍ତ୍ତି ପ୍ରତି ଘୃଣା ଅଛଇ ତାହାର ॥ ଯେ ହେତୁ ତାହାର ଇଚ୍ଛା କରିଣ ସ୍ୱରୂପ । ଭକ୍ତର ମାନସ ଶାନ୍ତ କରିବାକୁ ଲୋପ ॥ ପ୍ରତିମା ପୂଜାରେ ନାହିଁ ଅବଜ୍ଞା ଈଶ୍ୱର । ପ୍ରତିମା କୁହନ୍ତି ପ୍ରଭୁ ଜାଣ ବିଜ୍ଞନର ॥ ଈଶ୍ୱର ଭକ୍ତିର ତାହା ଅଟେ ଉଦ୍ଦୀପକ । ପ୍ରତିମା ପୂଜକେ ତେଣୁ ସାଧାରଣ ଲୋକ ॥ କେଉଁ ମୂର୍ଖ କୃଷ୍ଣମୂର୍ତ୍ତି କରିଣ ଦର୍ଶନ । ବୃନ୍ଦାବନବାସୀ କୃଷ୍ଣ ବିଶ୍ୱାସେ ତକ୍ଷଣ । ୮୫ । ସେ କେବଳ ମୂର୍ତ୍ତି ଦେଖି ଭାବେ ନିଜମନେ । ଶ୍ରୀକୃଷ୍ଣଙ୍କ ଏହି ରୂପ ଥିଲା ବୃନ୍ଦାବନେ ॥ ସେ ଜନ ଈଶ୍ୱର ରାଧା କୃଷ୍ଣ ବୋଲି ଭାବେ । ମୂର୍ତ୍ତି ନିଦର୍ଶନେ ଭକ୍ତି ସେହ

ସଦା ପାଇବେ ॥ ଭକ୍ତଜନ ନିଦର୍ଶନେ ନ କରଇ ହେଳା । ଯେ ହେତୁ ଭକ୍ତିର ନାଶ କରେ ଅବହେଳା ॥ ପ୍ରତିମୂର୍ତ୍ତି କେବେ ନୁହେ ଆରାଧ୍ୟ ମୋହର । ପ୍ରତିମୂର୍ତ୍ତି ନିଦର୍ଶନ ଜାଣିଅଛୁ ସାର ॥ ଭକ୍ତି ଉଦ୍ଦୀପନ ଶକ୍ତି ଅଛୁ ଯେଣୁ ତାର । ତତ୍ପ୍ରତି ଜାଣ ତୁ ମନ କର ନମସ୍କାର । ୯୦ । ପ୍ରତିମା ନମିଲେ ନାହିଁ ଈଶ୍ୱରଙ୍କ ରୋଷ । ଯେ ହେତୁ ଈଶ୍ୱରେ ନାହିଁ କେବେ କିଛି ଦୋଷ ॥ ମାନବ ପରି ନୁହନ୍ତି ହରି ହିଂସା ପୂର୍ଣ୍ଣ । ଅଦ୍ୱିତୀୟ ଅଟନ୍ତି ସେ କୃଷ୍ଣ ନାରାୟଣ ॥ ଯାହା କିଛି ଜଗତରେ ଅଛୁ ମହାଶୟ । ସକଳ ଈଶ୍ୱର ସୃଷ୍ଟି ନାହିଁ ତା ସଂଶୟ ॥ ଅତଏବ ଯେ ରୂପରେ ନିଦର୍ଶନ କରେ । ନୁହଇ ଅବଜ୍ଞା ତାହା କଦାପି ଈଶ୍ୱରେ ॥ ମୂର୍ଖ ଲୋକ ଈଶ୍ୱରଙ୍କୁ ନିର୍ବିଶେଷ ମଣି । ପ୍ରତିମା ନମିବା ପାଇଁ କରେ ଭୟ ପୁଣି ॥ ଆତ୍ମା ନୟନରେ ହରି କର ଦରଶନ । ଆତ୍ମାମୟ ଅବୟବେ କର ଆରାଧନ ॥ ନମସ୍କାର କର ମନ ପ୍ରତିମା ସକଳେ । ମନର ଉଦ୍ଦେଶ୍ୟ ହିଏ ଯେ ଭକ୍ତି ସରଳେ ॥ ଅତଏବ ଜାଣ ଏହା ନିଷ୍ଠେ ଭକ୍ତିବର । ପ୍ରତିମା ସର୍ବଦା ନମ୍ୟ ଅଟେ ଭକ୍ତଙ୍କର ॥ ଯଥା ତଥା ପ୍ରତିମାଙ୍କୁ କର ଦରଶନ । ପ୍ରଣମି ହରିଙ୍କ ନାମ କର ହେ କୀର୍ତ୍ତନ ॥ ପ୍ରଭୁର ଏମନ୍ତ ଜ୍ଞାନ ଯାହା ପ୍ରାପ୍ତ ହେଲେ । ପ୍ରଧାନ ଆତ୍ମାର ରୂପ ଜାଣେ ଭୂମଣ୍ଡଳେ ।୧୦୦। ପ୍ରତିମା ଜାଣିବ ମାତ୍ର ଗୁଏ ନିଦର୍ଶନ । ସାଧାରଣ କରେ ଯହିଁ ଭକ୍ତି ଉପାର୍ଜ୍ଜନ ॥ ଭଗବତ ଗୀତା ଶାସ୍ତ୍ରେ ଦେଖ ବିଜ୍ଞବର । ବିଶ୍ୱରୂପ ଅର୍ଜ୍ଜୁନେ ଦେଖାଇ ବ୍ରଜେଶ୍ୱର ॥ ପ୍ରାକୃତ ନୟନେ ସେହି ରୂପ ମନୋହର । ମାନବର ସାଧ୍ୟ ନୁହେ ନ ହୁଏ ଗୋଚର ॥ ପୂର୍ବ ସଂସିଦ୍ଧି ବଳରୁ ହୁଅଇ ଏମାନ । ବୁଦ୍ଧି ଆନୁସାର କର ସଞ୍ଜମ ଚୈତନ୍ୟ ॥ ଏ କାରଣୁ ଦିବ୍ୟ ନେତ୍ରେ ସୁଭଦ୍ରାର ପତି । ନିରୀକ୍ଷଣ କରିଥିଲେ ବିଶ୍ୱରୂପ ପ୍ରତି । ୧୦୫ । ସେହି ରୂପ ଦିବ୍ୟ ନେତ୍ରେ

ଦେଖ ଭକ୍ତଗଣ । ପ୍ରତିମା ତାହାର ମାତ୍ର ଅଟେ ନିଦର୍ଶନ ॥ ଆତ୍ମା-
ରାମ ଭାବ ଯହିଁ ପାଏ ପରମାର୍ଥ । ତେବେ ରାଧା କୃଷ୍ଣ ଭଜ ପାଏ କି
ପଦାର୍ଥ ॥ ରାଧା କୃଷ୍ଣ ଭାବଠାରୁ ନାହିଁ ଉଚ୍ଚତର । ଦୃଢ଼ ଭାବେ ଧର
ମନ ବୈଷ୍ଣବର ସାର ॥ କୃଷ୍ଣ ନାମେ ବହୁ ଫଳ ଲଭତ ସଂସାରେ ।
ଏପରି ସୁମିଷ୍ଟ ନାମ ନାହିଁ ଚରାଚରେ ॥ ବହୁତ ପ୍ରକାରେ ପ୍ରେମେ
ମତ୍ତ ହୋଇ ସର୍ବେ । ଆକର୍ଷଣ କରେ ଯହୁଁ କୃଷ୍ଣ ବୋଲି
ଭାବେ । ୧୧୦ । ଆତ୍ମାରାମ ରୂପ ଜାଣ କୃଷ୍ଣର ସ୍ୱରୂପ । ତାହା ବିନ୍ଦୁ
ଜାଣ ତୁ ମନ କୃଷ୍ଣ ବିଶ୍ୱରୂପ ॥ ଆତ୍ମାରେ ତାହାର ସ୍ଥିତି ଦିବ୍ୟ
କଳେବର । ଦିବ୍ୟ ନେତ୍ରେ ଦେଖ ଭକ୍ତ ଆତ୍ମାର ଭିତର ॥
ପ୍ରାକୃତିକ ଭାବ ଯାର ଅସାଧ୍ୟ ସାଧନ । କେବେ ଦେଖେ ନାହିଁ
ତାଙ୍କୁ ପ୍ରାକୃତ ନୟନ ॥ ଆତ୍ମାରାମ ରୂପ ସେହି ଆତ୍ମା ରାମ ନାମ ।
ଆପଣା ଆତ୍ମାରେ ତାହା ଦେଖେ ଗୁଣଧାମ ॥ ମାନବ ଆତ୍ମାର
ଅଟେ ସ୍ୱତନ୍ତ୍ର ଗଠନ । ସ୍ୱତନ୍ତ୍ର ଆତ୍ମାର ଧର୍ମ ଶୁଣ ବାଇମନ ।୧୧୫
ସଚ୍ଚିତ ଆନନ୍ଦ ଅଟେ କୃଷ୍ଣର ସ୍ୱରୂପ । ଭକ୍ତର ଭାବନା ମାତ୍ର
ସେହି ଏକ ରୂପ ॥ ସଚ୍ଚିତ ଅର୍ଥରେ ହୁଏ ନିତ୍ୟ ଜ୍ଞାନ ରୂପ ।
ଆନନ୍ଦ ସଂଯୋଗେ ହୁଏ କୃଷ୍ଣର ସ୍ୱରୂପ ॥ କୃଷ୍ଣ ଦେଖେ ଦୁଇ ଭାବ
ଅଛୁ ସର୍ବକ୍ଷଣ । କଠିନ ସରଳ ଦୁଇ କର ହେ ଦର୍ଶନ ॥ ଆହ୍ଲାଦିମା
ଭାବ ବୋଲି ରାଧା ଠାକୁରାଣୀ । ଅତଏବ ରାଧା କୃଷ୍ଣ ସାର ବୋଲି
ଜାଣି ॥ ଏହି ଦ୍ୱୈତ ଭାବନାରେ ଯେଉଁ ମହାଜନ । ରାଧା କୃଷ୍ଣ ଦୁଇ
ନାମ କର ଉଚ୍ଚାରଣ । ୧୨୦ । ତାହାର ଭକ୍ତିର ସିଦ୍ଧି ହୋଇବ
ପ୍ରବଳ । ସେ ଭକ୍ତ କଦାପି ପାଏନାହିଁ ମନ୍ଦ ଫଳ ॥ ଶୁଣିଲୁ ବାଉଳ
ମନ ପ୍ରତିମା କାହାଣୀ । ପ୍ରତିମା ପୂଜାରୁ ବଡ଼ି ହୁଏ ଆତ୍ମଜ୍ଞାନୀ ॥

ଜଗତ୍ ବ୍ରହ୍ମ ରୂପଂ ଚ ମେକବାଂଶ ସୂତ୍ରଧାରସ୍ୱେକ୍ଷ ।
ବ୍ରହ୍ମା ବିଷ୍ଣୁ, ଶିବତ୍ୟାଦ୍ଧ ସଂସ୍ଥିତଂ ତନ୍ତ୍ରମଧ୍ୟସ୍ୱୋ ॥

| ଉତ୍ପତ୍ତି | ସ୍ଥିତି | ପ୍ରଳୟ |
|---|---|---|
| | ଜଗତ୍ ଜସାଣ ପୂଜା ସହିତ | |

| ଶ୍ରୀଂ | | ଅଂ ୧ ହ୍ରା / ଓଁ ୨ ସ୍ୱା | | ଶ୍ରୀଂ |
|---|---|---|---|---|
| | କୃଷ୍ଣ | | ରାଧା | |

| ରୁକ | ହ୍ରୀଁ ୫ | ଠଁ | ଠ | ଷଁ ୬ | ଜଜୁଠ |
|---|---|---|---|---|---|
| ସି ୭ | ଛି ୮ | ନ ୩ | ମୋଃ ୪ | ଋଁ ୯ | ହୁଁ ୧୦ |

| | | | | | | | |
|---|---|---|---|---|---|---|---|
| ଫଁ ୧୧ | ଋଁ ୧୩ | ୠଁ ୧୩ | ଌଁ ୧୪ | ଶଁ ୧୫ | ଶଁ ୧୬ | ବଁ ୧୭ | ଢଁ ୧୮ |
| ଅଁ ୧୯ | ଆଁ ୨୦ | ଇଁ ୨୧ | ଈଁ ୨୨ | ଉଁ ୨୩ | ଊଁ ୨୪ | ଋଁ ୨୫ | ୠଁ ୨୬ |
| ଌଁ ୨୭ | ୡଁ ୨୮ | ଏଁ ୨୯ | ଐଁ ୩୦ | ଓଁ ୩୧ | ଔଁ ୩୨ | ଅଁ ୩୩ | ଅଁ ୩୪ |
| | କଁ ୩୫ | ଖଁ ୩୬ | ଗଁ ୩୭ | ଘଁ ୩୮ | ଙଁ ୩୯ | ଚଁ ୪୦ | |
| | ଛଁ ୪୧ | ଜଁ ୪୨ | ଝଁ ୪୩ | ଞଁ ୪୪ | ଟଁ ୪୫ | ଠଁ ୪୬ | |
| | ଡଁ ୦୭ | ଢଁ ୪୮ | ଣଁ ୪୯ | | ତଁ ୫୦ | ଥଁ ୫୧ | |
| | ଦଁ ୫୨ | ଧଁ ୫୩ | ନଁ ୫୪ | | ପଁ ୫୫ | ଫଁ ୫୬ | |
| ଶାମ | ବଁ ୫୭ | ଭଁ ୫୮ | ମଁ ୫୯ | ଯଁ ୬୦ | ରଁ ୬୧ | ଲଁ ୬୨ | ଅଥର୍ବ |
| ଶ୍ରୀଂ | * | ବଁ ୬୩ | ଶଁ ୬୪ | ଷଁ ୬୫ | ସଁ ୬୬ | * | ଶ୍ରୀଂ |

ଊ ୬୭ । ଡ଼ ୬୮ । ଯୁ ୬୯ । ଲ୍ଲ ୭୦

ତଥିଁର ଚତୁଃପାଶ୍ୱେ ଗୋମୟରେ ଲିପିକରି ଏଣୁ ଚଳଲିଖିତ ବିବାଠ ଯନ୍ତ୍ରକୁ ହଳଦୀ ଗୁଣ୍ଡାରେ କିବା କୁଙ୍କୁମରେ ବସାଣ ଅକ୍ଷର ଅଙ୍କ ଲେଖିବ । ଲିଖିତ ଦ୍ରବ୍ୟ ସଂଯୁକ୍ତ କରି ନିକଟରେ ରଖିବ । ଯେ ଯେଉଁ ଭାବନାରେ କର୍ମ କରେ ତାର ସେଣୁ କାମନା ସିଦ୍ଧ ହୁଏ । (ସ୍ତ୍ରୀସ୍ୱା) ଶୁଦ୍ଧ ମନରେ ବୃନ୍ଦାବନ୍ତୀକ ହଳଦୀ ଲଗାଇ ସ୍ନାନ କରାଇ ପଟ୍ଟବସ୍ତ୍ର ପିନ୍ଧାଇ ଉପଚାର ଦେବ । କଜ୍ଜ୍ୱଳ, ସିନ୍ଦୂର, ଗନ୍ଧ, ଚନ୍ଦନ କନ୍ୟର ପୁଷ୍ପ, ଗୋଲାପ ପୁଷ୍ପ, ମନ୍ଦାର ପୁଷ୍ପ, ଧୂପ, କର୍ପୂର, ସ୍ତ୍ରୀସ୍ୱା ଆରମ୍ଭରୁ ଘୃତ ଦୀପ ଜାଳିବ, ଭିଧିବନ୍ଧ ସେବା କରିବ । ଗୋ କ୍ଷୀର ଗୋ ଦଧି,ଗୋ ଘୃତ,ମଧୁ,ସାକରରେ ପଞ୍ଚାମୃତ କରିବ । ପୃଥକରେ କଞ୍ଚା କ୍ଷୀର, ନଡ଼ିଆ, ଗୁଡ଼, ଅରୁଆ, ଗୁଡ଼ଜଳଖିଆ, ଉଖୁଡ଼ା, ବିକ୍ଷରି ମନ୍ତ୍ରରେ ନୈବେଦ୍ୟ ମନୋତ୍ସ କରାଇବ, (ଭୋଗମନ୍ତ୍ର) ଓଁ ହ୍ରୁଂ ଶ୍ରୀଂ କ୍ଲୀଂ ବିକ୍ଷରାସ୍ତୁ ନମଃ, ନୈବେଦ୍ୟ ସମର୍ପଣ କରାଇ ତାମ୍ବୁଳ ସମର୍ପଣ କରି କର୍ପୂର ଆଳତି ଦେଇ ସାଧକ ସାଧନାରେ ଯୁକ୍ତ ହେବେ ଯୋଗାସନ, ନହୁବା ପଦ୍ମାସନରେ ବସି ହାଟକରେ ଚକ୍ଷୁ ପଲକ ପଡ଼ିବ ନାହିଁ । ପୂର୍ବ କିବା ଉତ୍ତର ମୁଖ ହୋଇ ବିକ୍ଷରି ମନ୍ତ୍ର ସାଧକ କରିବାକୁ ହେବ । ବିକ୍ଷରି ମନ୍ତ୍ର—ଓଁ ହ୍ରୁଂ ଶ୍ରୀଂ କ୍ଲୀଂ ବିକ୍ଷରାସ୍ତୁଂ ନମୋଃ । ସାଧକ କୁଶ ଆସନରେ ବସି ଆସନ ଶୁଦ୍ଧି ଇତ୍ୟାଦି ଲିଖିତ ପ୍ରକାରେ କରିବାକୁ ହେବ । ଏକ ଗ୍ରନ୍ଥ କରିବାକୁ ହେବ । କରି ନ ପାରିଲେ ଏକ ଅଷ୍ଟୋତ୍ତର କରିବାକୁ ହେବ । ଇତ୍ୟାଦି ମନ୍ତ୍ର—

## ଆସନ ଶୁଦ୍ଧି

ଓଁ ଆସନ ଶୁଦ୍ଧି ମନ୍ତ୍ରସ୍ୟ, ମେରୁପୃଷ୍ଠଋଷିଃ ସୁତଳଛନ୍ଦ, ଶ୍ରୀ କୂର୍ମ ଦେବତା ମମାସନ ଶୁଦ୍ଧି ପ୍ରୀତ୍ୟର୍ଥେ ବିନଯୋଗଃ, ଇନ୍ଦ୍ରାଦି ଦଶଦିଗ୍ପାଳସ୍ତୁ ନମୋଃ ଇନ୍ଦ୍ରାଦି ଦଶଦିଗ୍ପାଳସ୍ତୁ ଆସନ ପାଦ୍ୟା-ସସ୍ୟ ଧୂପ ଦୀପ ନୈବେଦ୍ୟଂ ପୂଜୟେତ୍—

ଓଁ ଅଜପା ମନ୍ତ୍ରସ୍ୟ, ନାରଦ ଋଷି, ବିରାଟ ଛନ୍ଦ, ଶ୍ରୀ ପରମାତ୍ମା ଦେବତା, ଅଜପାମନ୍ତ୍ର ଜପେ ବିନିଯୋଗଃ ।

ସୋଽହଂ—ଶତୋତ୍ତର ସଂଖ୍ୟକଂ ଜପେତ୍ ପୂରକେ—

ଆଧାର ଲିଙ୍ଗ ନାଭୌ ତଦୁପରି ହୃଦୟେ କଣ୍ଠଦେଶେ ଲଲାଟେ ।
ହସ୍ତପତ୍ରେ ଷୋଡ଼ଶାରେ ଦ୍ୱିଦଶ ଦଶଦଲେ ଦ୍ୱାଦଶାର୍ଦ୍ଧେ ଚତୁଃସ୍ତ୍ରେ ।
ବସନ୍ତେ ଦଲ ମଧ୍ୟେ ଡଫକଠ ସହିତେ ଅହଂ ଦେଶେ ସ୍ୱରାଣାଂ ।
ହଂ କ୍ଷଂ ତତ୍ତ୍ୱାର୍ଥ ଯୁକ୍ତଂ ସକଳ ଦଳଗତଂ ବର୍ଣ୍ଣ ରୂପଂ ନମାମି ॥

ଆଦ୍ୟ ଅନ୍ତଂ ସିଦ୍ଧିରସ୍ତୁ ସହିତଂ ବର୍ଣ୍ଣଶୁଦ୍ଧି ନମସ୍ତୁତେ । ବାମେ ଗୁରୁଭ୍ୟୋ ନମୋଃ ପରମ ଗୁରୁଭ୍ୟୋ ନମୋଃ, ପରାପର ଗୁରୁଭ୍ୟୋ ନମୋଃ, ଦକ୍ଷିଣେ ଗଣେଶାୟ ନମୋଃ, ପୃଷ୍ଠେ ରୁଦ୍ରଦେବାୟ ନମୋଃ ସମ୍ମୁଖେ ଓଁ ଶ୍ରୀଂ ହ୍ରୀଂ ତୁଳସାୟଂ ନମୋଃ ॥

ଏହି ବିଧାନରେ ନିୟମ ଏହି, ଯେଉଁ ଭାବନା କରି କାର୍ଯ୍ୟ କରେ, ତାହାର ସେହି କାର୍ଯ୍ୟ ହୁଏ । କେ ଜଳ ଦେବାକୁ ଚାହେଁ, କେ ଜ୍ୟୋତିଷ ହେବାକୁ ଚାହେଁ, କେ ବୈଦ୍ୟ ହେବାକୁ ଚାହେଁ, କେ ପରମ ରହସ୍ୟ ବୁଝିବାକୁ ଇଚ୍ଛାକରେ । ଏପରି ଏଥିରେ ଧର୍ମ, ଅର୍ଥ, କାମ, ମୋକ୍ଷ ଓ ବ୍ରହ୍ମ ପଦାର୍ଥକୁ ଲଭିପାରେ, ଏଥିରେ ସନ୍ଦେହ ନାହିଁ । ମୂଳ ବିଶ୍ୱାସ ଶେଷ କଥା—

## ଭଗବତ ଗାୟତ୍ରୀ

ଓଁ କ୍ଳୀଂ ଭଗବତାୟ ନମୋଃ, କ୍ଳୀଂ ଭଗବତାୟ ବିଦ୍ମହେ ।
ପତିତପାବନାୟ ଧୀମହି, ଶ୍ରୀ ଭଗବତ ପ୍ରଚୋଦୟାତ୍ ॥

## ବୃନ୍ଦାବତୀ ଗାୟତ୍ରୀ

ଶ୍ରୀ ତୁଳସୈ ନମୋଃ, ଶ୍ରୀ ତୁଳସୈ ବିଦ୍ମହେ ।
ଜଗନ୍ନିତାପନାଶିନୈ ଧୀମହି, ତନ୍ନୋବୃନ୍ଦା ପ୍ରଚୋଦୟାତ୍ ॥

କଳିର ଚଳଣି ପଦେ ଅଧେ ଶୁଣ ମନ । ଧର୍ମ ସଙ୍କୁଚିତ ହୋଇ ଉଠୁଥିବ ପୁଣ ॥

ଶ୍ଳୋକଃ

ଧର୍ମ ସଙ୍କୁଚିତ୍ୟ ତପୋ ବିରହିତଂ ସତ୍ୟ ତ ଦୂରଂଗତଂ ।
ଲୋକା ଧର୍ମ ହତା ଦ୍ୱିଜାଶ୍ଚ ଲୋଭିତା ନାସ୍ତିକା ମାନବା ॥
ନିର୍ବିର୍ଯ୍ୟା ପୃଥିବୀ ନରୌଷଧ ରସାନାସ୍ତ ମହତ୍ତ୍ୱଂଗତା ।
ଭୂପାଳ ନିଜ ଧର୍ମ କର୍ମ ରହିତା ବିପ୍ର କୁମାର୍ଗଂ ଗତା ॥
ଭାର୍ଯ୍ୟାଭର୍ତ୍ତୃ ବିରୋଧିନୀ ପରରତା ପୁତ୍ର ପିତୃଦ୍ୱେଷିଣୋ ।
ହା କଷ୍ଟଂ ଖଳୁ ବର୍ତ୍ତି ତ କଳିଯୁଗେ ଧନ୍ୟ ନରା ଯେ ମୃତା ॥

କଳିର ମହିମା ଶୁଣ ଆରେ ଭୁଲମନ । ହଂସ୍ରୁକ ପାଷାଣ୍ଡ ଗଣ କହୁଥିବେ ଜ୍ଞାନ ॥ ଗୀତାଦି ଗ୍ରନ୍ଥ ପଢ଼ିଣ ବୋଲାଇବେ ଗୁରୁ । ମଧୁର ବଚନ କହି ମନ କରି ସରୁ । ଧୀର ସ୍ଥିର କଥା କହି ବକ ବଳିଷ୍ଠବେ । ଶିଷ୍ୟ ସକାଶେ ବୁଲିବେ ଗ୍ରାମେ ଠାବେ ଠାବେ ॥ ଗୁରୁମାନେ ସ୍ତ୍ରୀ ଦେଖି ଶିଷ୍ୟଣୀ କରିବେ । ଗୁରୁପତ୍ନୀ ଦେଖି ଶିଷ୍ୟେ ରମଣ ମାଗିବେ । କାମର ପ୍ରବଳେ ଗୁରୁ ସ୍ତ୍ରୀ ଶିଷ୍ୟ କରି । ଚରଣ ସେବା ଦେଖାଇ କୋଳାଗ୍ରତ କରି । ବେଦ ମନ୍ତ୍ର ଶୂଦ୍ରଙ୍କୁ ଦେଇଣ ଧନ ନେବେ । ଦକ୍ଷିଣା ଭିକ୍ଷା ଭିକ୍ଷିବେ ପୁଣ୍ଡ୍ରୀକ୍ଷ ହବେ ॥ ଷଡଚକ୍ର ଗୁମ୍ଫା ଅବା ଉରେ ଭୁଲାଇବେ । ଜ୍ୟୋତି ହଂସ ଦୀକ୍ଷା ବୋଲି ତାହାଙ୍କୁ ଭଣ୍ଡିବେ ॥ ବାଛି ବାଛି ଶିଷ୍ୟ କରି ଧନର ଲାଳସେ । ମଧୁର ବାକ୍ୟ କହିବେ ବୁଲି ଦେଶେ ଦେଶେ ॥ ଭଗବତ ପୋଥୀ ସ୍ଥାପି ହୋନେ ହେବେ ଯୋଗୀ । ପ୍ରାଣୀ କ ଭଣ୍ଡି କହିବେ ଆମ୍ଭେ ଅନୁଭବୀ ॥ ପୁତ୍ରର ବଳକ ମନ ମାତାର ଉପରେ । ଦେଢ଼ଶୁର ଭାଇବୋହୂ ରତି ଲାଳସାରେ ॥ ଝିଅ ପୁତ୍ରୁର ପୀରତି ଭାଇ ଭଉଣୀର । ମାତାଙ୍କୁ ଚତେ ପତ୍ନୀକ କରିବେ ଆଦର ॥ ବିମାତା ପୁତ୍ର ରମଣ

ସ୍ୱଜନ ବଅର । ଗୋମାତା ବତ୍ସା ଭକ୍ଷିବ ତୁଳସୀ ଭାଣ୍ଡାର ॥ ଶ୍ରୀଗୁରୁ ମନ୍ତ୍ର ନ ଧରି କହିବେ ଝୁଞ୍ଜୁର । ଘରପୋଡ଼ି ଯେ ହୋଇବ ବରଷା ମାସର ॥ ଯୁବା ସ୍ତ୍ରୀମାନେ ହାଟ ବାଟ ମେ କରିବେ । ଶୂଦ୍ର ପାକେ ବ୍ରାହ୍ମଣେ ଯେ ଆନନ୍ଦେ ଭୁଞ୍ଜିବେ ॥ ସ୍ୱଇଚ୍ଛାରେ ନାରୀମାନେ ରମଣ ଖୋଜିବେ । ପତିକି ମୋହିତ କରି ପାଦେ ଖଟାଇବେ । ବ୍ରାହ୍ମଣେ ଗାୟତ୍ରୀ ଛାଡ଼ି ଗାରେଡ଼ି ଶିଖିବେ । ପ୍ରେତ ଉଚ୍ଛିଷ୍ଟରେ ମନ ମଜାଇ ରହିବେ ॥ ନୀଚ ଜନେ ଉଚ୍ଚ ହେବେ ଉଚ୍ଚ ନୀଚ ହେବେ । ସ୍ୱ ଧର୍ମ ଛାଡ଼ିଣ ଲୋକେ ଅନ୍ୟ ଧର୍ମେ ଯିବେ ॥ ବିଧବା ରମଣେ ମଜ୍ଜିବେ କାମର ପ୍ରବଳେ । ବର୍ଣ୍ଣ ଶଙ୍କରେ ବଢ଼ିଥା ହୋଇବେ ସେ କାଳେ ॥ ଧର୍ମକୁ ଛାଡ଼ି ବ ଧର୍ମେ ଆଚରଣ କରି । ବ୍ରାହ୍ମଣେ ଶୂଦ୍ର ନ ବାରି ସର୍ବ ଏକ କରି । କଳିର ମହିମା ଏହୁ କେ ଆନ କରିବ । ବ୍ୟାସଦେବ କହିଛନ୍ତି ନିଷ୍ଟୟ ହୋଇବ ॥ ଶୁଣିଲୁ କଳି ବୃତ୍ତାନ୍ତ ଆବର ବାଇମନ । ସୃଷ୍ଟି ବୃତ୍ତାନ୍ତ କାହାଣୀ କରିବା ବଖାଣ ॥

ଶ୍ଲୋକଃ

ନ ବିପ୍ରଂ ସାଦୃଶଂ ପାତ୍ର ନ ଦାନଂ ସୁରଭିସମଂ
ନ ଚ ଗଙ୍ଗା ସମଂ ତୀର୍ଥଂ ନ ବ୍ରତଂ ତୁଳସୀସମଂ ॥

ସୁବିପ୍ର ସୁରଭି ଗଙ୍ଗା ଆବର ତୁଳସୀ । ଏହି ଚାରି ଶ୍ରେଷ୍ଠ ଅଟେ ସର୍ବ ଶାସ୍ତ୍ରେ ଭାଷି ॥ ଦଶ କର୍ମେ ବ୍ରତ ପୂର୍ଣ୍ଣ ଉବୀତ ଧାରଣେ । ବିପ୍ର ଉଦେ ଯୋଗ୍ୟ ନୁହେଁ ଶାସ୍ତ୍ରର ପ୍ରମାଣେ । ବିପ୍ର କର୍ମ ତେଜି ଯେହୁ କରେ ମନ୍ଦାଚାର । ଚଣ୍ଡାଳ ଠାରୁ ସେ ହୀନ ଲୋକରେ ପ୍ରଚାର ॥ ପାତାପାତ୍ର ନ ବିଚାରି ଯେହୁ କରେ ଦାନ । ଆକାଶ କୁସୁମ ସମ ବ୍ୟର୍ଥ ସେହି ଧନ ॥ ତୀର୍ଥ ଦାନ ବ୍ରତ ପୂଜା ଯେତେ ଅଛି ରହି । ମନ ତୃପ୍ତି ହୁଏ ମାତ୍ର ନୋହ ତୃପ୍ତି କହି ॥ ଯେତେ ତୀର୍ଥ ବ୍ରତ ଆଦି ଅଛି ଜଗତରେ । ପୂରି ରହି ଅଛି ନିଜ ଦେହର ଭିତରେ ॥ ସେ ଯେଣୁ

ପରମବ୍ରହ୍ମ ମହିମା ସାଗର । ଥୋକାଏ କହିବା ତାଙ୍କ ମହିମା ଅପାର ॥ ସମସ୍ତ ଜଗତ ଜଳାର୍ଣ୍ଣବ ଥିଲା ଯହୁଁ । ଅକଳନ ଯୁଗ ଧାତା ଭ୍ରମିଲେକ ତହୁଁ ॥ ସ୍ଥିର କରି ନ ପାରିଣ ଦେଖିଲେ ଅଦ୍ଭୁତ । ଶିଶୁ ଏକ ଶୋଇଛନ୍ତି ଏକ ବଟ ପତ୍ରେ ॥ କୁତୂହଳେ ପୃଚ୍ଛା କଲେ କିଏ ତୁମ୍ଭେ ଅଟ । ସୁଯୋଗେ ତୁମ୍ଭ ଦର୍ଶନ ହେଲା ମୋର ଭେଟ ॥ ଅନେକ ଯୁଗ ଭ୍ରମିଣ ଅନ୍ତ ନ ପାଇଲି । ତୁମ୍ଭ ରୂପ ଦେଖି ମନେ ଆଶ୍ଚର୍ଯ୍ୟ ଲଭିଲି ॥ ଧାତାଙ୍କ ବଚନେ ସେହୁ ବଟପତ୍ରଶାୟୀ । ମନ୍ଦେ ହସି କହନ୍ତି ହୋ ଶୁଣ ମନଦେଇ ॥ ତୁ ଯାହା ଚିନ୍ତୁ ମନେ ତାହା ଦେବାକହି । ମୋ ଗର୍ଭରେ ପଶିଣ କଳ୍ପନା କର ତୁହି ॥ ତଦନ୍ତରେ ସୃଷ୍ଟିର ବିଧାନ ମାନ ଯେତେ । ସଂକ୍ଷେପି କହିବା ତହୁଁ ସର୍ବି ବୁ ଜଗତେ ॥ ଏତେ କହିଣ ପାଟି ବିସ୍ତାର କଲେ ଯହୁଁ । ପ୍ରବେଶିଲେ ତାହାଙ୍କ ଗର୍ଭରେ ଅଷ୍ଟବାହୁ ॥ ଗର୍ଭେ ଭ୍ରମି ଦେଖନ୍ତି ଯେ ଅଶେଷ ବ୍ରହ୍ମାଣ୍ଡ । ନଦ ନଦୀ ସପତ ସାଗର ଛନ୍ତି ଗୁଣ୍ଡ ॥ ଛପନ କୋଟି ଜୀବ ଗଣଙ୍କର ଯେ ଗତି । ଯାହା ଇଚ୍ଛା ତାହା ଦେଖିଲେକ ପ୍ରଜାପତି ॥ ଆଶ୍ଚର୍ଯ୍ୟ ହୋଇଣ ତହୁଁ ହୋଇଲେ ବାହାର । ପାଦେ ପଡ଼ି ସାଷ୍ଟାଙ୍ଗରେ କଲେ ନମସ୍କାର ॥ ସେହି ପରଂ ବ୍ରହ୍ମ ରୂପ ଅନାଦି ଆଦେଶେ । ସର୍ଜନା କଲେକ ସୃଷ୍ଟି ବିଧାତା ହରଷେ ॥ ଏଣୁ କରି ଆରେ ମନ ସବୁ ଦେହ ପୂର । ଅନନ୍ତ ସତ୍ତ୍ଵରୁ ସେବି ବ୍ରହ୍ମ ହେତୁ କରି ॥ ଏହାପରି ତୋତେ ବୁଝାଇବି ଆଉ କେତେ । ମନଠାରୁ ଅନ୍ୟ କେହି ନାହିଁଟି ଜଗତେ ॥ ମନକୁ ଦୃଢ଼ କରି ପାରିଲେ ବ୍ରହ୍ମ ପଦ । ପାଇବୁ ନିଶ୍ଚୟ ତୁହି ନାହିଁ ଭେଦାଭେଦ ॥ ଭ୍ରମର ଯେସନେ ସବୁ ପୁଷ୍ପ ମକରନ୍ଦେ । ସଂଗ୍ରହ କରିଣ ମଧୁ ରହଇ ଆନନ୍ଦେ ॥ ସେହି ସୁଧା ଭୁଞ୍ଜି ମଧୁ ସବୁ ପ୍ରାଣୀଗଣ । ସେବିଣ ଅଶେଷ ରୋଗୁ ମୁକ୍ତ ହୋନ୍ତି ପୁଣ ॥ ତେସନେ ଏ ସାରସୁଧା ଗୀତା ସବୁ

ଶାସ୍ତ୍ର । ମାନଙ୍କରୁ ସାର ବାଛି ହୋଇଛି ରଚିତ ॥ ଯେ ଯାହା ବାଞ୍ଛିତ ଫଳ ଏହି ଶାସ୍ତ୍ରଗତେ । ଅଛଇ ହେ ବିଜ୍ଞଜନେ ବାଛି ଘେନ ଚିତ୍ତେ ॥ ମରାଳ ଯେସନେ ନୀର ଅଂଶ ତେଜି କ୍ଷୀର । ସରଗେ ଭକ୍ଷଣ କରେ ହୋଇ ତୋଷଭର ॥ ସେହିପରି ଏଥୁ ସାର ଘେନ ଅସାରକୁ । ତେଜ ସାଧୁଜନେ କ୍ଷମା ମାଗୁଛି ତୁମ୍ଭଙ୍କୁ ॥ ଶାସ୍ତ୍ରଜ୍ଞ ପଣ୍ଡିତ ଜ୍ଞାନୀ ବିବେକୀ ନୁହଇ । ସଦ୍‌ଗୁରୁ ଆଦେଶେ ଏହା ରଚିଅଛି ମୂର୍ଖ । ମନ କର୍ଣ୍ଣ ଦେଇ ଯେହୁ ଜନ ଶ୍ରଦ୍ଧା ଭରେ । ପଢ଼ଇ ଅବା ଗୁଣଇ ନିତ୍ୟ ଅନ୍ତଃସ୍ଥରେ ॥ ଧନ ଜନ ଗୋପଲକ୍ଷ୍ମୀ ଆୟୁଷ ବର୍ଦ୍ଧନ । ହୁଅଇ ନିଶ୍ଚୟ ଏଥୁ ହୁଅଇଟି ଜାଣ । ଭୂତ ପ୍ରେତ ଯକ୍ଷ ବ୍ରହ୍ମ ରାକ୍ଷସ ପିଶାଚ । ଗ୍ରହ ଆଦି ପ୍ରବେଶ ନୁହନ୍ତିଟି କଦାଚ ॥ ସାରସୁଧା ଗୀତା ଏହୁ ସର୍ବ ଶାସ୍ତ୍ରେ ସାର । ବାଞ୍ଛିତ କାମନା ଏଥୁ ଲଭିବ ତତ୍ପର ॥ ସାଗର ମନ୍ଥନେ ଯେହ୍ନେ ଅମୂଲ୍ୟ ପଦାର୍ଥ । ପାଇଣ ମହାନନ୍ଦ ଲଭିଲେ ସୁର ଦୈତ୍ୟ ॥ ସେହି ଅନୁସାରେ ଏହି ସାରସୁଧା ଗୀତା । ଦ୍ୱାଦଶ ଅଧ୍ୟାୟରେ ପୂର୍ଣ୍ଣ କଲେ ରଚୟିତା ॥ ନିବାସ ଅଟଇ ବ୍ରହ୍ମପୁର ଯେ ମନୋହର । ଭରଦ୍ୱାଜ ଗୋତ୍ର ଭବ ଅଟେ ଦ୍ୱିଜବର ॥ ସନ୍ନ୍ୟାସୀ ଗନ୍ନାଥସୁତଙ୍କ କନିଷ୍ଠ କୁମର । ଶ୍ୟାମସୁନ୍ଦର ନାମଟି ଅଟଇ ପ୍ରଚୁର ॥ ଜଗତ ମଧ୍ୟରେ ଗଡ଼ି କରଇ ଗୁହାରି । ଜଗତରୁ କି ବାହାର ଅଛେ ତୃଣୁ ଅଣୁ ॥ ବାହାରେ ଥାଇଣ ଧନ ଚିନ୍ତାରେ ପଡ଼ିଲି । ଗୃହର ଧନ୍ଦା ଧନକାରେ ଚକ୍ର ସୁକ୍ତ କଲି ॥ ଶରଣ ପଞ୍ଜରେ ବାନା ତଳ ମହାମେରୁ ରୁ ନାଥ ପୁଣି ବାଞ୍ଛା ଜନଙ୍କ କଳ୍ପତରୁ ॥ ଏକଶତ ଅଠାବନ ପଦେ ହେଲା ଶେଷ । ଶ୍ରୀକୃଷ୍ଣ ପଦାରବିନ୍ଦେ ରହୁ ମୋ ମାନସ ॥

## ରାଗ—ଚୋଖି

ମାଳା ଭଜନ ତୁ କରୁ, ମାଳା ଭଜନ ନ କର, କୃଷ୍ଣଆଳେ ଚିନ୍ତା ମେଳ କର ତୁ ବସି । ଏକବିଂଶ ସହସ୍ର ଛ'ଶ, ଜପ କରୁଅଛି

ହଂସ, ଏହା ଭଜନକୁ ଯେବେ ପାଶବୁ ରଖି ତାର ସୂକ୍ଷ ଶୁଣ ସୁମନ, ଗୁହ ଦେହ ମୃଣାଳରେ ଟେକ ବନ୍ଧନ । ୧ । ସବୁ ଚିନ୍ତା ଦୂର କର, ପଦ୍ମାସନ ଭିଡ଼ ଧର, ଯାନୁ ଯୁଗଳରେ ପାଣି ଦୃଢ଼ରେ ଧର । କଟି ଗ୍ରୀବା ସମ କର, ନାସାଗ୍ରେ ଦୃଷ୍ଟିକୁ ଧର, ମଣ୍ଡାଇବ ମୂଣ୍ଡଣୀଙ୍କ ଫଣୀ କ ଧର । ପ୍ରଶ୍ୱାସକୁ ସମରେ ନେବୁ, ବନ୍ଧନାଶ କୁନାସୁକ ବୋଲ ଚନ୍ଦ୍ରବୁ । ୨ । ଖେଚରୀ ମୁଦ୍ରାକୁ ଧର, ଅର୍ଦ୍ଧ ଶିଶୁମୁନା ଠାର, ସମ ଘରେ କୁମ୍ଭ ରଖି ଉଜାଣୀ ଧର । ପ୍ରଶ୍ୱାସରେ ଟେକ ହଂସ, ନ ଫେରଇ ଧମି ପକ୍ଷ, ସୋଧାଇଣ ଦଶଦ୍ୱାର ଏକକୁ ଧର । ମନ ପର୍ଣ୍ଣମାସୀଙ୍କୁ ଧର, ସ୍ଥିର ଅଙ୍ଗେ ସ୍ବସ୍ଥ ହେଲେ ହେବୁ ଅମର । ୨ । ମୂଷିକ ଯାନେ ଗଣେଶ, ଶଙ୍ଖିନୀ ଧେନଣ ପାଶ, ଦୂଲ ସହସ୍ର କନଶ ପଦ୍ମ ଛଳରେ । ଦେବଦଳ ନାମେଧୀଶ ମହାଦେବଙ୍କର ଶିଷ୍ୟ ଚତୁର୍ଦ୍ଦଳୋ ବ ଶ ସ ନ୍ୟାସ ଊର୍ଦ୍ଧ୍ୱରେ । ଷଡ଼ଦଳେ ଯାଇଣ ମିଶୂ ; ଦୁଇ ହଜାର ତିନିଶ ଭଜନେ ଦେସୁ ।୪। କାମ ସଙ୍ଗେ ଧେନ ରତି, ବ ଭ ମ ଯ ର ଲ ସ୍ଥିତି, ଜାହ୍ନୁକ ଯାନେ ବସାଇ ସର୍ଧୀରେ ଉଠୁ । କାମ ବୀଜ ଉଠି ଆସୁ ଦଶ ଦଳ ଦଳେ ପଶୁ, ଡ଼ ଢ଼ ଣ ଥ ଦ ଧ ନ ପ ଫ କୁ ରସୁ । ହଂସ ଯାନେ ବ୍ରହ୍ମା ସାବିତ୍ରୀ, ଛଅ ସହସ୍ର ସ୍ବରଶ ଭଜନରେ ସ୍ଥିତି । ୫ । ସୁପର୍ଣ୍ଣ ଯାନେ ବେଷ୍ଟିତ, ଆଠ ସହସ୍ର ଅଠଶ, ଲକ୍ଷ୍ମୀ ଧେନ ନାରାୟଣ କ୍ଲୁବନ୍ତେ ସ୍ଥିତ । କ ଖ ଗ ଘ ଙ ଚ ଛ ଜ, ଝ ଞ ଟ ଠ ଦଳ ଭେଦ ହଂହ ଧାନେ ନାରାୟଣ ଦ୍ୱାଦଶେ ରସ । ଷୋଳ ଦଳେ ନ୍ୟାସିଣ ପଶୁ । ହନ୍ଦହର ଭେଟ ସ୍ଥାନେ କଳ୍ପଷ ନାଶୁ । ୬ । ବୃଷଭ ଯାନେ ମହେଶ, ଶିବା ଧେନ ପଦ୍ମ ଦେଶ, ଦୁଇ ସହସ୍ର ସ୍ବରଶ ହଜାରେ ହସୁ । ଅ ଆ ଇ ଈ ଉ ଊ ହଂସ, ଋ ଌ ୡ ଏ ଐ ମିଶ, ଓ ଔ ଅଂ ଅଃ ଷୋଳ ଦେଶ ଉଜାଣୀ ଝଞ୍ଜୁ । ବେନ ଦଳ ମିଶିଣ ଯାଉ ଦଗ୍ଧ ରନ୍ଧ୍ର

କାମ ଧାମ ଧଣଣି ଯାଉ । ୭ । ବେଦ ନେଇ ଚନ୍ଦ୍ର ସୂର୍ଯ୍ୟ ବୃକ୍ଷ ମଧ୍ୟେ କାମ ବୀଜ, ବୈକୁଣ୍ଠ ସରୋବରରେ କଣଛନ୍ତି ବାସ ଦୁଇ ସସ୍ତ୍ର ଭ୍ରମଣତ, ହଂସ ବାହନରେ ହଂସ, କରଛନ୍ତି ରାଧା କୃଷ୍ଣ ନିତ୍ୟ ରାହାସ । ପ୍ରେମ ସ୍ନେହ କର ଭକ୍ତି ଭାବ, କୃପାମୟୀ ମହାଲକ୍ଷ୍ମୀ ଅନୁଭବ । ୮ । ଫଣୀ ଶିଶୁମ୍ନାରେ ଭର, ରମା ଢଳେ ଚକ୍ଷୁ ଧର, କାମ ବୀଜ ସ୍ଥିର କରି ହଂସକୁ ଜପ । ଧ ମ ଢକେ ସର୍ବ ଶୂନ୍ୟ, ନିଃଶବ୍ଦ ପରମବ୍ରହ୍ମ, ଧୂମାବାରି ପରମରେ ଦେଖ ଅରୂପ । ଅରୂପରେ ରୂପ ଅଛନ୍ତି, ଚକ୍ଷୁରୁ ବାହାରି ନାସା ଅଗ୍ରେ ଖେଳନ୍ତି । ୯ । ପୂରକ କରିଣ ଠେକ, କୁମ୍ଭକ ଚୌଷଠି ରଖ, ରେଚକ ଷୋଳ ଗୁଣ୍ଡ଼ିକା କର ଅମାପ । ଅମାପ ମାପିବୁ ଯେବେ, ଅଭକ୍ଷ ଭକ୍ଷିବୁ ତେବେ, ଜ୍ୟୋତି ଦେଖାଇଣ ଦେବୁ ଅପରେ ଅର୍ପ । ଆପକୁ ଆପରେ ମିଶାଅ, ହଜ ଖୋଜିଲେ ପାଇବୁ ତୋହରି ଦେହ । ୧୦ । ସମାନ ଘରେ ପ୍ରାଣ ରହୁ, ବ୍ୟାନ ଘରେ ଜୀବ ରହୁ, ଉଦାନ ଘରେ ଶୁଣିବୁ ଦଶ ବାଇ । ଝିଙ୍କାରି କୁକ୍କୁଟ କେକୀ, ତୂର୍ଯ୍ୟ ପ୍ରଣବ କପୋତକ୍ଷି, ଘଣ୍ଟ ବାଦ୍ୟ ଶିନ ନାଳେ ଓଂକାର କଣ୍ଠ ଭୃଙ୍ଗ କାଂଶ ସାରି ପାରଦ, ଚେତା ରଖିଲେ ଶୁଣିବ ଦ୍ୱାଦଶ ବାଦ୍ୟ । ୧୧ । ହଜ ହଜ ଘରେ ଦେଖ, ସହଜାନନ୍ଦ ପ୍ରତ୍ୟକ୍ଷ, ଅଣ ଅକ୍ଷରେ ଅଖଣ୍ଡ ମଣ୍ଡଳ କୃଷ୍ଣ । ଅନ୍ତରରେ ଛନ୍ତି ଚକ୍ଷି, ଭଳା ଭଳ କଛି ନାହିଁ, ଆବ୍ରହ୍ମ ବ୍ରହ୍ମ ପର୍ଯ୍ୟନ୍ତ ପ୍ରଭୁଙ୍କ ବାସ । ଜ୍ଞାନ ନେତ୍ରେ ଦର୍ଶନ କର ନିତ୍ୟାନନ୍ଦେ ଚଇତନ୍ୟ ସେଠାରେ ଧର । ୧୨ । ଗୁରୁସେବା ଥିବ ଯେବେ ଦର୍ଶନ କରିବୁ ତେବେ ଜନା ଗୁରୁ ସେବାରେ କେ ପାଇଛି କେଉଁଠି । କାମ କ୍ରୋଧ ଲୋଭ ମୋହ ମଦ ମାତ୍ସର୍ଯ୍ୟ ଏ ଛଅ ଗୁରୁଙ୍କ ଚରଣ ଧ୍ୟାୟୀ ଏହାକୁ କାଟ । ଗୁରୁପାଦ ଭରସା କର ଧନ ଜନ ମନ ଦେଇ ଅର୍ପଣ କର । ୧୩ । ବ୍ରହ୍ମପୁରେ ବାସ ତାର ଗଞ୍ଜାମ ଜିଲ୍ଲାରେ ହୁମ୍ମୁର, ନାମ ଶ୍ୟାମସୁନ୍ଦର ଭରଦ୍ୱାଜ ଗୋତ୍ର ॥ ଦତ୍ତର

ବୁଦ୍ଧି ତାହାର କାଙ୍ଗାଳ ଆଗୁର ତାର;ଉକତ ମେଳରେ ସଦାନ୍ଦ୍ରତା କାରବାର । ଯୁଗଳ ସେବାରେ ଜୀବନ, ବଞ୍ଚିଛୁ ହେ ଭକ୍ତଗଣ କର ମାର୍ଜ୍ଜନ ॥

ଗୌରାଙ୍ଗ ବଲେନ ଭଟ୍ଟାଚାର୍ଯ୍ୟ କହ ମୋରେ । ନାମେର ତତ୍ତ୍ୱ କେବଲ ବଲହେ ଆମାରେ ॥ ସାର୍ବ୍ବ ଭୌମ ଭଟ୍ଟ କହେ ଓହେ ଗୌରଧନ । ଏକାକ୍ଷର ବଲେ ତତ୍ତ୍ୱ ଆଛେତେ ଗୋପନ ॥ ଶ୍ରୁତି ସନକାଦି ଋଷି ଖୋଜଆ ନା ପାଅ । ଏଇତତ୍ତ୍ୱ ପାଏ ଶିବ ଶୁଣ ନେ ବେଡ଼ାଏ ॥ ହରି ନାମେର ତତ୍ତ୍ୱ ଏହ ଏକାକ୍ଷର ଯାନ । ବ୍ରହ୍ମାରେ ଦୁର୍ଲ୍ଲଭ ନାମ କରିବ ବଖାନ ॥ ପ୍ରଥମେ ଅକାର କ୍ଷର ରାଖହେ ଯତନେ । ଆକାର ମାତ୍ରା ଯତନେ ରଖିବେ ଦକ୍ଷନେ ॥ ଉକାର ମାତ୍ରାତେ ପଦତଲେ ହଆଇବେ । ଏକାର ମାତ୍ର ଉଭର ହଗେତେ ଖଞ୍ଜିବେ ॥ ଅମାତ୍ରାର ଘରେ ହଦ ବ୍ରହ୍ମକେ ସ୍ଥାପିବେ । ଇକାର ମାତ୍ରା ଲଇଯାଁ ତାର ପରେ ଦିବେ ॥ ପଞ୍ଚମ ହଲେ ଫୁଟିବେ ପୁଷ୍ପବାସ ଯେଇ । ଭାଲ କରି ଚିହ୍ନ ଏକାକ୍ଷର ବ୍ରହ୍ମ ଏଇ ॥ ଏକାକ୍ଷର ଶୁନେ ଗୌରାଙ୍ଗ ଆନନ୍ଦ ହଇଲ । ସାର୍ବ୍ବ ଭୌମ ଭଟ୍ଟାଚାର୍ଯ୍ୟେ ଧନ୍ୟ ଧନ୍ୟ କୈଲ ॥

ପ୍ରବର୍ତ୍ତକ, ସାଧକ, ସିଦ୍ଧି, ସୁମନ୍ତ୍ରାଶ୍ରୟ, ନାମାଶ୍ରୟ, ପ୍ରେମାଶ୍ରୟ ରସାଶ୍ରୟ ।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସମ୍ବାଦାୟାଂ
ସୃଷ୍ଟି ନିର୍ମାଣ କଥନେ ନାମ ଦ୍ୱାଦଶ ଅଧ୍ୟାୟ । କୃଷ୍ଣାର୍ପଣମସ୍ତୁ ।
ବହୁବ୍ରଜ ନମୋଃସ୍ତେଽସ୍ତୁ ଭବତ୍ନୈ ଚ ଭବାୟ ଚ ।
ରାଧା ଗୋବିନ୍ଦ ଦେବାଭ୍ୟାଂ ନିର୍ବିଘ୍ନାୟ ନମୋଃ ନମଃ ॥

—ସମାପ୍ତ—

ମୁଦ୍ରଣ—ମହାଲକ୍ଷ୍ମୀ ପ୍ରିଣ୍ଟର୍ସ, ହରିପୁର, କଟକ-୨

# ବିଜ୍ଞାପନ

ଆମ୍ଭର ଏଠାରେ ବେପାରୀମାନଙ୍କୁ ବଜାର ଅପେକ୍ଷା ବ
କମିଶନ ଦିଆହୋଇ ରେଳଭଡ଼ା ଛାଡ଼ ଦିଆଯାଏ । ସମସ୍ତ
ପୁରାଣ, ଉପପୁରାଣ, ଛନ୍ଦ, ଟୀକା, ବ୍ରତ, କାହାଣୀ,
ନଭେଲ, କବିରାଜୀ, ଜ୍ୟୋତିଷ ଗ୍ରନ୍ଥ, ପାଠ୍ୟପୁସ୍ତକ, ଗ୍ରନ୍ଥାବ
ପଞ୍ଜିକା ଆଦି ଦିଆଯାଏ । ଯେଉଁମାନେ ନୂଆକରି ବ୍ୟବସା
କରିବେ ସେମାନେ ଯେଉଁ ବହି ନେଇ ବିକ୍ରି କରି ନ ପାରିବେ
ଅନ୍ୟବହି ବଦଳାଇ ଦେବୁ, ଆଉମଧ୍ୟ ଆମ ନିଜ ବହି ନେଇ ବି
ନ ପାରିଲେ ଆମ୍ଭେ ବହି ଓ୍ୟାପସ ନେଇ ଟଙ୍କା ଫେରସ୍ତ କରିବୁ ।
ପତ୍ର ଯୋଗାଯୋଗ କରନ୍ତୁ । ଇତି ।

ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶାବଜାର, କଟକ

ପ୍ରକାଶ ପାଇଲା ! ପ୍ରକାଶ ପାଇଲା !

ଋଗ, ଯଜୁଃ, ସାମ ଓ ଅଥର୍ବ

## ଚତୁର୍ବେଦ

ମୂଲ୍ୟ—ଟ ୧୧୦୦-୦୦ ଏଗାରଶହ ଟଙ୍କା

---

ପ୍ରକାଶକ ଓ ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ମୁଦ୍ରକ—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର, କଟକ-୨
ଫୋନ ନଂ-୨୩୨୪୩